# ଆଖି ନାହିଁ କାନ ନାହିଁ

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

ଆଖିନାହିଁ କାନ ନାହିଁ [ହାସ୍ୟଗଳ୍ପ ସଙ୍କଳନ]

ଲେଖକ—ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

ପ୍ରକାଶକ—ସରସ ସାହିତ୍ୟ ସମିତି

ପିଠାପୁର, କଟକ-୭୫୩୦୦୧

ପ୍ରଥମ ପ୍ରକାଶନ—୧୯୭୭-୧୦୦୦

ମୁଦ୍ରାକର—ଶ୍ରୀ ରାମଚନ୍ଦ୍ର ମିଶ୍ର

ଡଗର ପ୍ରେସ୍, ପିଠାପୁର, କଟକ-୭୫୩୦୦୧

ମୂଲ୍ୟ—ଟ ୫-୦୦ [ପାଞ୍ଚଟଙ୍କା]

# କାର୍ଯ୍ୟସୂଚୀ

# କହିଦେଲେ ଦୋଷ ନାହିଁ

ଫକୀରମୋହନଙ୍କ ପରେ ଓଡ଼ିଆ ସାହିତ୍ୟରେ ହାସ୍ୟରସର ଯାହା କିଛି କ୍ରମବୃଦ୍ଧି ଘଟିଛି ସେ ସବୁଥିରେ ଡ଼ଗର ପତ୍ରିକା କୌଣସି ନା କୌଣସି ଉପାୟରେ ସମ୍ପୃକ୍ତ । ରସସର୍ଜନା କ୍ଷେତ୍ରରେ ସେନାପତିଙ୍କର ଉତ୍ତରାଧିକାରୀ କାନ୍ତକବି ଶ୍ରୀ ଲକ୍ଷ୍ମୀକାନ୍ତଙ୍କ ପ୍ରତିଷ୍ଠିତ ଏହି ପତ୍ରିକା ବିଗତ ୪୦ ବର୍ଷ ଧରି ଓଡ଼ିଶାରେ କେବଳ ହାସ୍ୟରସକୁ ବଞ୍ଚାଇ ପୁଷ୍କଳ କରିବାରେ ନୁହେଁ, ତାହାର ବିଭିନ୍ନ ଆଭିମୁଖ୍ୟ ଖୋଲିବାରେ ମଧ୍ୟ ସଫଳ ପ୍ରଚେଷ୍ଟା କରିଆସିଛି ।

ଆଜିର ଉତ୍କଳରେ ଯେତେ ହାସ୍ୟରସ ସ୍ରଷ୍ଟା ଲେଖନୀ ଚାଳନା କରୁଛନ୍ତି ସେ ସମସ୍ତଙ୍କର ସାହିତ୍ୟିକ ଜନ୍ମଜାତକ ବୋଧ-ହୁଏ କେବଳ ଡ଼ଗର ପତ୍ରିକାହିଁ ଦେଇପାରିବ । ୧୯୩୬ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ବର୍ଷରେହିଁ ରାଜନୈତିକ ବାତାବରଣ ଓ ସାଂସ୍କୃତିକ ଆବର୍ତ୍ତ ମଧ୍ୟରେ ଡ଼ଗରର ସୃଷ୍ଟି । ଯେତେବେଳେ ଓଡ଼ିଆମାନେ ଏକ ସ୍ୱତନ୍ତ୍ର ଭାଷାର ଅଧିକାରୀ ଓ ସ୍ୱତନ୍ତ୍ର ରାଜ୍ୟର ବାସିନ୍ଦା ରୂପେ ଭିତରିପୁ ମାନଙ୍କଠାରୁ ନିଜର ସ୍ଥିତି ଖୋଜୁଥିଲେ ଏବଂ ଭିତରୁ ଓ ବାହାରୁ ବହୁ ବିପଦ ଓ ବିରୋଧର ଆଶଙ୍କାରେ ଶଙ୍କିତ ହୋଇଉଠୁଥିଲେ ସେତିକିବେଳେ ଜନତାକୁ ଦିଗ୍‌ଦର୍ଶନ ଦେବାପାଇଁ ଏବଂ ସମସ୍ତ ବିରୋଧକୁ ଶାଣିତ ବ୍ୟଙ୍ଗ ଓ ବିଦ୍ରୂପରେ ବ୍ୟତିବ୍ୟସ୍ତ କରିବାପାଇଁ ଡ଼ଗରହିଁ ଆଗେଇ ଆସିଥିଲା ଲକ୍ଷ୍ମୀକାନ୍ତଙ୍କ ନେତୃତ୍ୱରେ ।

ସେ କେବଳ ଦରଦୀ ହୃଦୟର ସଙ୍ଗୀତ, ଧର୍ମଭିତ୍ତିକ ନାଟକ ବା ସମସାମୟିକ ରାଜନୀତି ଓ ସମାଜର ଲଘୁ ସମାଲୋଚନାର ଲେଖକ ନ ଥିଲେ । ହାସ୍ୟରସର ବିଭିନ୍ନ ବିଭାଗରେ ସେ ସାର୍ଥକ ଲେଖନୀ ଚଳାଇ ପରବର୍ତ୍ତୀ ବଂଶଧରଙ୍କ ପାଇଁ ବହୁ ଦିଗରେ ପଥ-

ପ୍ରଦର୍ଶିତ ହୋଇଛନ୍ତି । ବ୍ୟଙ୍ଗାନୁକରଣ କ୍ଷେତ୍ରରେ 'ଚଟକ ଚନ୍ଦ୍ର ହାସ ଚମ୍ପୂ', ହାସ୍ୟଗଳ୍ପ କ୍ଷେତ୍ରରେ 'ଦେହଦେ ଛକ୍କିବ ମୁଦାରଂ' ରାଜନୀତିକ ବ୍ୟଙ୍ଗ ପରେ 'ଅସହଯୋଗୀର ଆତ୍ମକଥା, ହାସ୍ୟରସାତ୍ମକ ଉପନ୍ୟାସ କ୍ଷେତ୍ରରେ ଅସମ୍ପୂର୍ଣ୍ଣ 'କଳାମାମୁଁ' ତାଙ୍କ କୃତି ସମୂହର କେତୋଟି ମାତ୍ର ଉଦାହରଣ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କୁ ଅମର କରି ରଖିବାରେ ତାଙ୍କର ଏହି କୃତିଗୁଡ଼ିକ ଯେ କେବଳ ଦାୟୀ ତାହା ନୁହେଁ, ନିଜର ପ୍ରେରଣା ଦ୍ୱାରା ଓଡ଼ିଆ ସାହିତ୍ୟରେ ସେ ଯେଉଁ କେତୋଟି ପ୍ରତିଭାବାନ କଳାକାର ସୃଷ୍ଟି କରି ଯାଇଛନ୍ତି ସେମାନେ ମଧ୍ୟ ତାଙ୍କ ଅକ୍ଷୟ ଯଶର କେତୋଟି ଜୀବନ୍ତ ପ୍ରତୀକ । ତାଙ୍କର ସୁପୁତ୍ର ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର ସେମାନଙ୍କ ମଧ୍ୟରୁ ଅନ୍ୟତମ ।

ଓଡ଼ିଶାବାସୀଙ୍କ ଆଗରେ ନିତ୍ୟାନନ୍ଦ ବାବୁଙ୍କ ସାହିତ୍ୟିକ ପରିଚୟ ଦେବା ଏକ ଧୃଷ୍ଟତା । ଆବାଲ୍ୟ ସଂଗ୍ରାମୀ, ସ୍ୱାଧୀନଚେତା ସମାଜସେବୀ ଶ୍ରୀଯୁକ୍ତ ମହାପାତ୍ର ଜଣେ ନୈଷ୍ଠିକ, ଧଡ଼ୋଠ ରଜ-ନୀତିଜ୍ଞ ଭାବରେ ନିଜର ଅବଦାନ ଦେଇଛନ୍ତି । ଲୋକେ ହୁଏତ ସେ ଅବଦାନକୁ ଦିନେ ଭୁଲିଯାଇ ପାରନ୍ତି କିନ୍ତୁ ଜୀଅନ୍ତା ମଣିଷ, ଭୁଲ, ଭଙ୍ଗାହାଡ଼, ହାତମାଟି, କାଳତୁଡ଼ି, ପର ଓ ପ୍ରତିମା, ଧଳା-ଗାର କଳାଗାର ପ୍ରଭୃତି ତାଙ୍କର ଅସଂଖ୍ୟ ମାନସ ସନ୍ତାନ ମଧ୍ୟରେ ସେ ଦେଇଥିବା ଅବଦାନ ଅବିନଶ୍ୱର । ଡଗରର ପତ୍ରିକା ପ୍ରକାଶ ଆରମ୍ଭଠାରୁ ଆଜି ପର୍ଯ୍ୟନ୍ତ ଦୀର୍ଘ ୪୦ ବର୍ଷଧରି ସେ ସମ୍ପାଦନା ଦାୟିତ୍ୱ ନେଇଛନ୍ତି । ଡଗରର ପ୍ରଥମ ପ୍ରକାଶନଠାରୁ ତାଙ୍କର ବହୁ ଲେଖା ଧାରାବାହିକ ଭାବରେ ଏହାର ପୃଷ୍ଠା ମଣ୍ଡନ କରିଆସିଛି । ତା' ଛଡ଼ା ଓଡ଼ିଆର ପ୍ରାୟ ସବୁ ପ୍ରତିଷ୍ଠିତ ପତ୍ର-ପତ୍ରିକାର ପୃଷ୍ଠା ତାଙ୍କ ଲେଖନୀର ସ୍ପର୍ଶରେ ଭାସ୍ୱର । ପିତାଙ୍କ ପରି ତାଙ୍କର ମଧ୍ୟ ସାହିତ୍ୟିକ ପ୍ରତିଭା ବହୁବିଧ । ପୁନଶ୍ଚ ପିତାଙ୍କର

ରସିକତା ଓ ରସସୃଜନକାରିଣୀ ଶକ୍ତିର ମଧ୍ୟ ସେ ଜଣେ ଯଥାର୍ଥ ଉତ୍ତରାଧିକାରୀ । ଏହି ପୁସ୍ତକ ସନ୍ନିବିଷ୍ଟ ଗଳ୍ପଗୁଡ଼ିକ ବିଭିନ୍ନ ସମ୍ପୁଟର ଉପରରେ ପ୍ରକାଶିତ ହୋଇଆସିଛି ।

ଅତି ତରୁଣ ବୟସରୁ ରାଜନୀତି ସହିତ ଅଙ୍ଗାଙ୍ଗୀ ଭାବରେ ସମ୍ପୃକ୍ତ ହୋଇ ପଡ଼ିଥିବାରୁ ନିତ୍ୟାନନ୍ଦ ବାବୁଙ୍କ ଅନେକ ଗଳ୍ପରେ ରାଜନୀତିର ଛାପ ବା ଗନ୍ଧ ସୁସ୍ପଷ୍ଟ । ଏ ଗନ୍ଧ ଅବଶ୍ୟ ସନ୍ନ୍ୟାସୀଙ୍କୁ ଆମିଷ ଗନ୍ଧପରି ନୁହେଁ ବରଂ ଆସକ୍ତଙ୍କୁ ଆସବର ଗନ୍ଧ ପରି ଆକର୍ଷଣୀୟ । ନିଜେ ବହୁ ବର୍ଷ ଧରି ପ୍ରତ୍ୟକ୍ଷ ରାଜନୀତିରେ ଓତଃପ୍ରୋତ ଭାବରେ ଜଡ଼ିତ ଥିବାରୁ ଓଡ଼ିଶାରେ ଥିବା କେତେକ ବଡ଼ ବଡ଼ ନେତାଙ୍କର ଛୋଟ ଛୋଟ ଦୋଷ ଦୁର୍ବଳତା ପ୍ରତି ଲକ୍ଷ୍ୟ ବ୍ୟଙ୍ଗ, କେତେକ ତଥାକଥିତ ଓ ନେତୃତ୍ୱଲିପ୍ସୁ ବ୍ୟକ୍ତିମାନଙ୍କର ମନୋବୃତ୍ତି ପ୍ରତି ତୀବ୍ର କଟାକ୍ଷ କରିଛନ୍ତି । ଜଣେ ଦୁଇଜଣ ଛୁଙ୍ଗା-ସ୍ଥାନୀୟ ବ୍ୟକ୍ତିଙ୍କୁ ପରୋକ୍ଷ କିନ୍ତୁ ବ୍ୟକ୍ତିଗତ ବିଦ୍ରୂପ କରିବାକୁ ମଧ୍ୟ ଛାଡ଼ିନାହାନ୍ତି, ଅବଶ୍ୟ ଖୁବ୍ କଳାପୂର୍ଣ୍ଣ ଭାବରେ । ଏପରି ଧରଣର ବ୍ୟଙ୍ଗ ବିଦ୍ରୂପ ମଧ୍ୟରେ ନିର୍ମଳ ହାସ୍ୟରସ ପାଇଁ ଖୋରାକ୍ ଥାଏ ଓ ସଂଶୋଧନ ପାଇଁ ଇଙ୍ଗିତ ଥାଏ । ଓଡ଼ିଶାର ରସଗ୍ରାହୀ ପାଠକ ସମାଜ ଏ ବିଷୟରେ ଅବହିତ ହେଲେ ହେଲା ।

ଏହି ଗଳ୍ପ ସଂକଳନର ସବୁ ଗଳ୍ପକୁ କ୍ଷୁଦ୍ର ଗଳ୍ପର ଶୈଳୀ ଦୃଷ୍ଟିକୋଣରୁ ପ୍ରଧାନତଃ ତିନି ଭାଗରେ ବିଭକ୍ତ କରାଯାଇ ପାରେ: ୧—ଗଳ୍ପ ଧର୍ମୀ ୨—ଚରିତ୍ର ଧର୍ମୀ ଓ ୩—ପ୍ରବନ୍ଧ ଧର୍ମୀ । ମୁଁ କିପରି ମଲି, ମୁଁ କିପରି ଘାସ ବାଟିଲି, ମୁଁ କମିଟି ବାବୁ ହେଲି, ସୋମନସ ଓ ରୋମାନ୍ସ, ବାଡ଼ୁଅର ବିବର୍ତ୍ତବାଦ ପ୍ରଭୃତି କେତୋଟି କ୍ଷୁଦ୍ରଗଳ୍ପ ଗଳ୍ପପ୍ରଧାନ । 'ଉତ୍କଳ ଗର୍ଦ୍ଦଭ' 'ଗୋବର୍ଦ୍ଧନ ଦାସ', 'ମଡ଼ିଶ୍ରୀ ସାବିତ୍ରୀ ପ୍ରଭୃତି' ଗଳ୍ପଗୁଡ଼ିକ ଚରିତ୍ର ପ୍ରଧାନ । ଏହି ଧରଣର ଗଳ୍ପଗୁଡ଼ିକରେ ଲେଖକ ସାମାଜିକ ଓ ରାଜନୈତିକ

ବିଦ୍ରୂପ ପାଇଁ ପ୍ରଭୂତ ସୁଯୋଗ ପାଇଛନ୍ତି । ସମସ୍ତାତ୍ତ୍ୱିର ଚିତ୍ରଣ ପାଇଁ ମଧ୍ୟ ଏ ଧରଣର କ୍ଷୁଦ୍ରଗଳ୍ପରେ ଯେଉଁ ବ୍ୟାପକ କ୍ଷେତ୍ର ଥାଏ ଲେଖକ ତାର ସମ୍ପୂର୍ଣ୍ଣ ସଦୁପଯୋଗ କରିଛନ୍ତି । ଅନ୍ୟ ଗଳ୍ପଗୁଡ଼ିକ ଚିନ୍ତାପୂର୍ଣ୍ଣ ବିଷୟଗତ, ଅର୍ଥାତ ପ୍ରବନ୍ଧଧର୍ମୀ । ଆଧୁନିକ ଆଲୋଚନାର ଭାଷାରେ ଏହାକୁ କେହି କେହି 'ରମ୍ୟରଚନା' ବୋଲି ନାମକରଣ କରିଛନ୍ତି । ପ୍ରତିଷ୍ଠିତ ସାହିତ୍ୟିକ ଓ ପ୍ରତିଭାବାନ ଚିନ୍ତାଶୀଳ ବ୍ୟକ୍ତିଙ୍କର ଉନ୍ନତ କିନ୍ତୁ ବିକ୍ଷିପ୍ତ ଚିନ୍ତାରାଶି ଏହି ଧରଣର ରଚନାରେ ପ୍ରକାଶ ପାଏ । ପତ୍ରାଳାପ ଛଳରେ ଲିଖିତ 'ପତ୍ର ଓ ପ୍ରତିମା' ପୁସ୍ତକଟି ନିତ୍ୟାନନ୍ଦ ବାବୁଙ୍କର ଏହି ରମ୍ୟରଚନା କ୍ଷେତ୍ରରେ ଓଡ଼ିଆ ସାହିତ୍ୟକୁ ବିଶିଷ୍ଟ ଅବଦାନ । ଅବଶ୍ୟ କାନ୍ତକବି ଲକ୍ଷ୍ମୀକାନ୍ତଙ୍କର 'ନବ ଜାଗରଣ' ପ୍ରଭୃତି ଏଇଧରଣର କେତୋଟି ରଚନା ତାଙ୍କର ଆତ୍ମଜଙ୍କୁ ଅନୁପ୍ରେରିତ କରିଥିବା ମଧ୍ୟ ସମ୍ଭବ । ଏହି ତିନୋଟି ପ୍ରକାର ମଧ୍ୟରୁ ସମ୍ପୂର୍ଣ୍ଣ ଅଲଗାଧରଣର ରଚନା ହେଉଛି 'ଭୂଇଁଫୋଡ଼ ନେତାଙ୍କ ବନ୍ୟାଞ୍ଚଳ ଉଦ୍‌ବୋଧନ'। ଏହା କ୍ଷୁଦ୍ରଗଳ୍ପ ନ ହେଲେ ମଧ୍ୟ ଏକ ଆଦର୍ଶ ହାସ୍ୟରସ ସୃଷ୍ଟିକାରୀ ରଚନା । ଜଣେ ଅନ୍ତଃସାରଶୂନ୍ୟ ତଥାକଥିତ ନେତାଙ୍କ ବାଗ୍ମିତା ପ୍ରଦର୍ଶନର ଅହମିକାକୁ ଏଥିରେ ବ୍ୟଙ୍ଗ କରାଯାଇଛି ।

ଏହି ହାସ୍ୟରସାତ୍ମକ କ୍ଷୁଦ୍ରଗଳ୍ପଗୁଡ଼ିକୁ ସମୂହଭାବରେ ପର୍ଯ୍ୟାଲୋଚନା କଲେ ଜଣାପଡ଼େ ଯେ ଏଗୁଡ଼ିକ ହାସ୍ୟସୃଷ୍ଟି ପାଇଁ ଉଦ୍ଦିଷ୍ଟ ହୋଇଥିଲେହେଁ ଅଟ୍ଟହାସ୍ୟ ପାଇଁ ନୁହେଁ । ଜଣେ ସମ୍ଭ୍ରାନ୍ତ ସାହିତ୍ୟିକ ସୁଲଭଶାଳୀନତା ଓ ରୁଚିବୋଧ ସବୁ ଗଳ୍ପଗୁଡ଼ିକର ରସ ସୃଷ୍ଟିକୁ ନିୟନ୍ତ୍ରିତ କରିଛି ।

ସଂକଳନର ପ୍ରାୟ ସମସ୍ତ ଗଳ୍ପ ଅନେକ ଦିନ ତଳର ରଚନା ଏବଂ ଲେଖକଙ୍କ ତରୁଣ ବା ଯୌବନ ସମୟର କୃତି । ସେତେବେଳେ ସେ ସମାଜକୁ ଯେତିକି ପରିମାଣରେ ଦେଖିଥିଲେ ଏବଂ ବୁଝିଥିଲେ ସେତିକିର ଯଥାର୍ଥ ପ୍ରତିଫଳନ କରିଛନ୍ତି; ତେଣୁ

କୌଣସି ପାଠକଙ୍କୁ ଯଦି କୌଣସିଠାରେ କିଛି ଅସଙ୍ଗତ ଅନୁଭୂତ ହୁଏ ତେବେ ସେ ଲେଖକଙ୍କର ସେଇ ତାରୁଣ୍ୟକୁ ଆଖି ଆଗରେ ରଖି ଗଳ୍ପଗୁଡ଼ିକ ଆଉଥରେ ପଢ଼ିବେ । ପରିଣତ ଓ ପୋଷିତ ନିତ୍ୟାନନ୍ଦ ବାବୁଙ୍କଠାରେ ବୌଦ୍ଧିକତା ଓ ପରିପକ୍ୱତା ଥିଲେହେଁ ଏ ଗଳ୍ପଗୁଡ଼ିକରେ ଭାବପ୍ରବଣତା ଓ ରସପ୍ରବଣତା ନିଶ୍ଚୟ ଅଛି ।

ଅନେକ ବର୍ଷ ତଳେ, ଆମର ଛାତ୍ରଜୀବନ କାଳରେ ମୁଁ ଓ ମୋର ସହପାଠୀ ବନ୍ଧୁ ଶ୍ରୀ ମୁରଲୀମୋହନ ଜେନା ଯଥାକ୍ରମେ ମୁଖ୍ୟପତ୍ର ଓ ସମ୍ପାଦକ ଥାଇ ଯେଉଁ ସରସ ସାହିତ୍ୟ ସମିତି ସାହିତ୍ୟାନୁଷ୍ଠାନଟିର ଅଗ୍ରୁମାରମ୍ଭ କରିଥିଲୁ ତାହା ଯେ ଆଜି ବର୍ତ୍ତମାନର ଏ ନୂତନ ରୂପରେ ପୁନର୍ଜ୍ଜୀବିତ ହୋଇ ଏତେଗୁଡ଼ିଏ ରସାମୋଦୀଙ୍କୁ ଏକତ୍ର କରି ପାରିଛି ଏବଂ କର୍ମପଥରେ ଧୀର କିନ୍ତୁ ଦୃଢ଼ପଦରେ ଅଗ୍ରସର ହେବାକୁ ଯାଉଛି ତାହା ଦେଖି ପ୍ରାଣରେ ଖୁବ ଆଶା ଜାଗ୍ରତ ହୁଏ । ଏହି ସାହିତ୍ୟାନୁଷ୍ଠାନ ଓଡ଼ିଶାର ସବୁ ହାସ୍ୟରସାତ୍ମକ ସାହିତ୍ୟିକମାନଙ୍କୁ ଏକତ୍ର କରିବା ସଙ୍ଗେ ସଙ୍ଗେ ହାସ୍ୟରସାତ୍ମକ ଲେଖାଗୁଡ଼ିକର ପ୍ରକାଶ, ପରିପ୍ରଚାର ଓ ସେ ସମ୍ପର୍କୀୟ ଆଲୋଚନା ଅନୁଷ୍ଠାନ ସଂଗଠନର ମଧ୍ୟ ଦାୟିତ୍ୱ ଗ୍ରହଣ କରିଛି । ଆଜି ଏହି ପୁସ୍ତକଟିର ପ୍ରକାଶ ତା'ର ସେହି ଉଦ୍ୟମର କିଞ୍ଚିତ୍ ରୂପାୟନ ମାତ୍ର । ଆଗ୍ରହୀ ପାଠକ ସାଧାରଣ, ସରକାର ଓ ଅନୁଷ୍ଠାନର କର୍ମକର୍ତ୍ତା ସମସ୍ତଙ୍କର ମିଳିତ ସାହାଯ୍ୟ ଓ ସହଯୋଗରେ ଏହି ଅନୁଷ୍ଠାନ ତା'ର ଚରମ ଲକ୍ଷ୍ୟ ସ୍ଥଳରେ ଅଚିରେ ଉପନୀତ ହୋଇପାରିବ ବୋଲି ବିଶ୍ୱାସ କରିଯାଏ ।

ଶ୍ୟାମ ସୁନ୍ଦର ମିଶ୍ର
ଅଧ୍ୟାପକ ସାହିତ୍ୟ କଲେଜ
କଟକ

ମକର ସଂକ୍ରାନ୍ତି
୧୪-୧-୭୭

# ମୁଁ କିମିତି ମଲି

ପାଠ ପଢ଼ିବାବେଳେ—ବିଶେଷତଃ ସହଶିକ୍ଷା ପ୍ରଚଳିତ ହେବାପରେ ପରୀକ୍ଷାରେ ଫେଲ ହୋଇ ମରିବା ଲୋକଙ୍କ ସଂଖ୍ୟା-ଠାରୁ ପ୍ରେମରେ ଫେଲ ହୋଇ ମରିବା ଲୋକଙ୍କ ସଂଖ୍ୟା ଯେ ଅଧିକ ଏଥିରେ ସନ୍ଦେହ ନାହିଁ । ମାତ୍ର ମୁଁ ପରୀକ୍ଷାରେ ଫେଲ ହୋଇନାହିଁ କି ପ୍ରେମରେ ବି ଫେଲ ହୋଇନାହିଁ । ଉଭୟରେ ପାସ୍ କରି ମଧ୍ୟ ମୁଁ କେମିତି ମଲି ତାହା ଏକ ଗବେଷଣାର ବସ୍ତୁ । ପରୀକ୍ଷା ଓ ପ୍ରେମରେ ଫେଲ୍ ମାରି ମରିବା ଲୋକଙ୍କର ଯେଉଁ ରୋଗ ହୁଏ, ତାର ପ୍ରତିଷେଧକ କିଜାଣି ବୈଜ୍ଞାନିକମାନେ ଅବିଷ୍କାର କରି ଗୋଟାଏ କଲମଇନ, କାଗଜଇନ ବା ଲଫାଫାଇନ୍ ର ପ୍ରଚଳନ କରିବେ । କିନ୍ତୁ ମୁଁ ଜାଣିଛି ମୋର ଯେଉଁ ମରଣ

ହେଲ, ତାର ଗୋବାଇ ଟୀକା ବା ଭେଭ୍‌ସିନାଶନ ଅବସ୍ଥାର ଅସମ୍ଭବ ।

ସେଦିନ ଇଲ ଦେଇଥାଏ ଖିର୍ଦ୍ଦାରୁ ଶଟି । "ପ୍ରାଣବନ୍ଧୁ ହେ, ତମ ପଥକୁ ଗୁହିଁ ଗୁହିଁ ଆଖି ପାଣି ଆଖିରେ ମଲଣି । ଆଜ ସନ୍ଧ୍ୟାରେ ବାପା ବୋଉ କେଲ୍ କାହାନ୍ତି । ସିଭ୍‌ସ ଅପ୍ ଗାଡ଼ିକୁ ଅନାଇଁ ବସିଲି । ନିଶ୍ଚୟ ଆସିବ—ନୋହିଲେ ମୋ ମୁଣ୍ଡ ଖାଇବ ।"

ଗାଡ଼ି ଆସି ଇଟଇରେ ପହଞ୍ଚିବ ବାରଟା ଭେଟେରିନାଟରେ, ସୁବିଧା କ୍ଲାସ । କଅଣ କରିବା । ଡାକିଲି ନଟବରକୁ । "ଭାଇ ମୋ ଜୀବନ ତୋ ହାତରେ । ଆଜ ଯଦି ଇଲି ପାଖକୁ ନ ଯାଏ, ଯେଉଁ ଅଇନ ହେଲଣି, ସେଥିରେ ବାହା ନ ହୋଇ ଘୁଞ୍ଚପଣ । ତାହା ନ ହେବା ଅଗରୁ ତ ବୋଝଣା ସରକାରଙ୍କ ଭେଦ ପନ୍ଦ ଏକଶ୍ଚଟିଅ ବ ଛାଟ ଖାଇଯିବ । ଇଲି ଯଦି ନାରାଜ ହୁଏ—ଜାଣିବୁ ମୋ ପ୍ରାଣଗଲା—ମୁଁ ଅମ୍ବହତ୍ୟା କରିଦେବ ।"

ନଟ କହିଲା—"ଅହା-ହା, ଏତେ ବଡ଼ ପ୍ରାଣଟା, ନେହେରୁ କହୁଛନ୍ତି—ତୁ ତ ଦେଶର ଗୋଟେ ହୋଲ୍ ପାରିବୁ—ମାନେ ସ୍ୱତନ୍ତ୍ର ପ୍ରସାଦ, ଇବାହଲାଲ—ମାନେ—ପ୍ରେସିଡେଣ୍ଟ, ପ୍ରଧାନ-ମନ୍ତ୍ରୀ । ଭାରତର ଏଇ ଭାବୀ ପ୍ରଧାନମନ୍ତ୍ରୀ ମରିଯିବେ—ମୁଁ ଏହା ସହ୍ୟ କରିପାରିବ ନାହିଁ ।"

ନଟବର ପ୍ରକୃତରେ କାନ୍ଦ ପକାଇଲା । ମୁଁ କହିଲି, "ମୋ କଥା ତେବେ କରିବୁ ?" ସେ ରାଜି ହେଲା । ନିଯମ ଭଲ ଅଖି ନୁହଁ । ମୁଁ କହିଲି— 'ଭାଇ ପ୍ରକ୍ସି"

"ସେ କହିଲା—ଭାଇ ସମସ୍ତଙ୍କ ଅଖିରେ ପଡ଼ି ଚଢ଼େଇ ଦେଇ ପାରିବ ! ହେଲେ ସୁପରିଣ୍ଟେଣ୍ଡେଣ୍ଟ ଦାସ ବଡ଼ ଚୋଖଡ଼ ।

ସଞ୍ଜବେଳେ ରେଲଚଳ୍, ପରେ ସେ ଯେତେବେଳେ ବୁଲିଯିବେ ?"

ମୁଁ କହିଲି—"ଅବେ ବୋକା, ଡକ୍ଟରଙ୍କୁ ସଙ୍ଗାଡ଼ିଦେଇ ଚଦର ଘୋଡ଼ାଇଦେଇ କହିବୁ—ଜର ! ଏତକ ପାରିବୁ ନାହିଁ ?"

କହିଲା—'ଅଚ୍ଛା' ! ମୁଁ ଗଲି ଖୁର୍ଦ୍ଦା । ତହିଁ ଆରଦିନ ମୁଁ ଫେରିଲାବେଳକୁ ଷ୍ଟେସନରେ ଗପ ଶୁଣିଲି—ଇଷ୍ଟ ହଷ୍ଟେଲ, ରେଭେନ୍‌ସା କଲେଜର ସଦାଶିବ ଦାସ ନାମଧେୟ ଜଣେ ବାଲୁଡକ୍ରମର ବିଦ୍ୟାର୍ଥୀ ହଠାତ୍ ମରିକି ଶୋଇଥିବାର ଦେଖା-ଯାଉଛି । ତାର ଶବସଂସ୍କାର ପାଇଁ ପିଲମାନେ ଖାନ୍‌ନଗର କାନ୍ଧ କାନ୍ଧ ଯାଉଛନ୍ତି । କଲେଜ ହଲ୍‌ରେ ଶୋକସଭା ବସିଛି ବୋଲି ବି କଏ କଥାବାର୍ତ୍ତା ହେଉଥିଲେ । ଡେଢ଼ ସ୍କୁଲର ପିଲ ଦୁଇଜଣ ମୋତେ ଭାଗ୍ୟ ଚିହ୍ନନ୍ତି ନାହିଁ । ମୋ ବୁଢ଼ାଆଜା କୁଆଡ଼େ ମୁଣ୍ଡ ଚୋଡ଼ି କାନ୍ଦୁଛି—ପାଗଳ ହୋଇଯିବ ବୁଢ଼ାଟା । ବାପା ମଲା ଦିନଠୁଁ ମୁଁ ତାର ଅଡର ଲଉଡ଼ି । କଥାଟା କ'ଣ କିଛି ବୁଝିପାରିଲି ନାହିଁ । ଷ୍ଟେସନ ପ୍ଲାଟଫର୍ମରୁ ବାହାରୁଛି କି ନାହିଁ ଦେଖିଲି ନଟବର ଧଇଁସଇଁ ହୋଇ ଛକବଜାର ରାସ୍ତାଆଡ଼୍ ଦଉଡ଼ୁଛି । ମୁଁ ପଚାରିଲି—"ନଟବର, କଥା କଅଣ ?"

ନଟ କହିଲା—"ଚୁପ୍ ଭାଇ ଚୁପ୍—ତୁ ଆଉ ପାଟି କରନା—ସବୁ ମଡ଼ର ହୋଇଯାଉଛି—ମୁଁ ନାଚୁଛି—ତୋ ବୁଦ୍ଧିରେ ପଡ଼ି ମୁଁ ଯାହା ହଲପଟା ହେଲିଣି ।"

ମୁଁ ପଚାରିଲି, "କଥା କ'ଣ କହ ।"

"ତୁ କଣ ଆଉ ବଞ୍ଚିବୁ ଯେ ତୋତେ କହିବି ? ତୁ ଆଜି ସକାଳୁ ମଲୁଣି । ତୋ ବୋଲକର ଛୁଆସବୁ ବହିନେଇ ଯାଉଛନ୍ତି ।"

"ଅବେ, ମୁଁ କେମିତ ମଲି ଅବେ କହ ।"

"ଅବେ ସବୁ କ୍ଲାସରେ ତ ପ୍ରକ୍ସି ଡାକ ଦେଇଥିଲି । ସୁପରିଣ୍ଟେଣ୍ଡେଣ୍ଟ୍ଙ୍କ କ୍ଲାସରେ ଅଜ ଯାଏଁ କୁଅବେ । ବଦମାସଟା ମାର୍କ କରିଥିଲା । ବେଲକଲ ପରେ ହାଜିର ମାଇନେଇ ଧୀରେ ଧୀରେ ଅସି ଅମ ରୁମ୍‌ରେ । ମୁଁ ଅଗରୁ ତକିଆ ସଜାଇ ରଖି ଦେଇଥିଲି । ସୁପରିଣ୍ଟେଣ୍ଡେଣ୍ଟ୍ ଦୁଆର ମୁହଁରେ ଠିଆହୋଇ କହିଲା —"ସଦାଶିବ କାହିଁ ?"

କହିଲି 'ସାର, ଭାରି ଜର—ବେଲକଲରୁ ଅସି ଶୋଇ-ପଡ଼ିଛି ।'

"ଡାକ୍ତର ଡାକ ଅଣ" କହି ଡାକ୍ତର ପାଖକୁ ଲେଖି ଚପରାସି ପଠାଇ ଦେଲେ । ମୁଁ ତା ଅଗରୁ ଯାଇଁ ଅମ କଲେଜ ଡାକ୍ତର ପାଖରେ ହାଜର । କହିଲି "ସାର୍—ଅପଣ ପରା ଫରେନ୍ ଯିବାକୁ ଲୋନ୍ ପାଇଁ apply କରିଥିଲେ ?—ଅପଣଙ୍କ ଅସିଷ୍ଟାଣ୍ଟ ସେକ୍ରେଟାରୀ ଫିନାନ୍ସ୍ ଖୋଜୁଥିଲେ—ଅପଣ ଶୁଣିଛନ୍ତି ?"

"ସତେ" ବୋଲି କହି ସେ ଉଠିଲେ ।

ମୁଁ କହିଲି, "ସାର୍, ଅଉ ଜଣେ ଦୁଇଜଣ ଖୁବ୍ ଧନ୍ଦାଧରି କରିଛନ୍ତି । ଅପଣ ଯାଆନ୍ତୁ, ବର୍ତ୍ତମାନ ଯାଆନ୍ତୁ । ସେ ମୋର ହିସାବରେ ଭଉଣୋଇ । ମୁଁ ତାଙ୍କୁ କହିଦେଇଛି । ଆଜି ସଞ୍ଜରେ ୭ଟା ବେଳେ ଅପଣ ଦେଖା କରିବେ । ଶୀଘ୍ର ଯାଆନ୍ତୁ ।"

ଡାକ୍ତର ଗଲା ପରେ ଚପରାସୀ ଅସି ଖୋଜି ନ ପାଇ ଫେରିଗଲା । ମୁଁ ଯାଇ ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହିଲି—"ସାର୍ ଲଳ ଫାର୍ମାସୀ ଡାକ୍ତର ମୋର ହିସାବରେ ଶଳା, ମୁଁ ଡାକିଅଣେ ।" ସେ ରାଜି ହେଲେ ।

ମୁଁ ମୋର କ୍ଲାସ ଫ୍ରେଣ୍ଡ ପ୍ରଦୀପ୍ତକୁ ଡାକ୍ତର ସଜାଇ ନେଇ ଆସିଲି—କଲିଙ୍ଗ ମିସି ପ୍ରୋପ୍ରାଇଟର ଡାକ୍ତର ଏସ୍. ଏସ୍. ଘୋଷ କରି । ପ୍ରଦୀପ୍ତର ଏଠା ଥ୍ରେଡେଷ୍ଟ ଇଯ୍ୟର ମେଡ଼କାଲ । ତାକୁ କହିଲି ଭାଇ, 'ଖାଲି ମିଛୁଟାରେ ଔଷଧ ଲେଖିଦେଇ ଜାବୁ' । ସବୁ କଥା ବୁଝାଇ ଦେଲି । ଗୋଟାଏ ସ୍ପଷ୍ଟ ଥ । ମୋର ସକାଳେ ପଢ଼ିଥିବା କଥା । ସେଇ ଅନୁସାରେ ସ୍ୱଷ୍ଟା ସମାଳ ଦେଇଥାନ୍ତି । ହଠାତ୍ ତାର ଆସି ପହଞ୍ଚିଲା—ସ୍ୱଷ୍ଟ ବାରଟା ଗାଡ଼ିରେ ମୋର ଅଜା ଅସିବେ । ମୁସ୍କିଲରେ ପଡ଼ିଲି । ପୁଣି କହିଲି—"ପ୍ରଦୀପ୍ତ, ଏଥର ଉପାୟ ?"

ପ୍ରଦୀପ୍ତ ବୁଦ୍ଧି ବତାଇଲା । ତଦନୁସାରେ ସେ ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହିଲା—ସାଙ୍ଗେ ସାଙ୍ଗେ ହାସପାତାଲକୁ ପଠାଅ । ମୁଁ ଓ କଶୋର ମିଶି ତକିଆଟାକୁ ରିକ୍‌ସାରେ ବସାଇ ହାସପାତାଲକୁ ନେଇଗଲୁଁ । ମାଡ଼ ପ୍ରକୃତରେ ହାସପାତାଳ ନଯାଇ ଗୋଟାଏ ଉଡ଼ାଘରେ ବସି ଉପାୟ ବାହାର କଲୁଁ । ସ୍ୱଷ୍ଟ ବାରଟାରେ ମୋର ଷ୍ଟେସନ ଯାଇଁ ଅଜାକୁ ଅଣିବା କଥା । ମୋର ବନ୍ଧୁ ହିସାବରେ ମୁଁ ସେଠିକୁ ଯାଇ ମୋ' ଅଜାକୁ କହିଲି—'ଭାଇ ଜର, ଡାକ୍ତର ମନାକରିଛନ୍ତି ଗୋଳମାଳ କରିବାକୁ । ଆପଣ ସ୍ୱଷ୍ଟରେ ଗେଷ୍ଟରୁମ୍‌ରେ ଶୋଇ ପଡ଼ନ୍ତୁ ।" ·

ବାସ୍ତବ ବୁଢ଼ା ଶୋଇ ପଡ଼ିଲା ମୋ କଥା ମାନି । ସକାଳେ ତୁ ଅସିଲା ନାହିଁ । ମୁଁ ମହା ଅଡ଼ୁଆରେ ପଡ଼ିଲି । ବୁଢ଼ାକୁ ଆଉ ଧମାଳି ନ ହୁଏ । ସେ ମୋତେ ଦେଖିବଇ ଦେଖିବ । ଶେଷକୁ କଶୋରକୁ ଶିଖାଇଦେଲି, ଆମେ ଅଧବାଟେଯାଏ ଯାଇଥିବୁଁ, ସେ ମେଣ୍ଟୁ ଦଉଡ଼ ଦଉଡ଼ ଆସି କହିବ ସଦାଶିବ ମରିଗଲା । ତା

ଶବକୁ ହାସପାତାଳରୁ ଆଣି ଗୋଟାଏ ଭଡ଼ାଘରେ ରାତକୁ ରଖାଗଲାଣି ।

ଅଗତ୍ୟା ଛଡ଼ିବାକୁ ପଡ଼ିଲା । ଗୋଟାଏ ମିଛକୁ ଘୋଡ଼ାଇ-ବାକୁ ହେଲେ ଶହେଟା ମିଛ ଦରକାର । ଏମିତ ପଢ଼େଇବୋଲ୍ କିଏ ଜାଣିଥିଲା । ବୁଢ଼ା ତ ମୁଣ୍ଡବୋଡ଼ି ହୋଇ ମଲା । ମୁଁ ହସିବି କି କାନ୍ଦିବି କିଛି ଠିକ୍ କରି ପାରୁ ନ ଥାଏ । ତୋ ଆସିବା ବାଟକୁ ଚାହିଁଥାଏ । ଦିନ ଗୋଟାକ ଗାଡ଼ିରେ ବି ଆସିଲୁ ନାହିଁ । ତେଣେ ସେ ଘରବାଲା କହୁଥାଏ—"ମଡ଼ା ଉଠାଅ, ମଡ଼ା ଉଠାଅ ।" ଭଡ଼ାଘର ତ, ଠକାଅ ହୋଇଥାଏ ମଡ଼ା । ବାଘ ହୋଇ ୪ଟାବେଳେ ମଡ଼ା ଉଠାଇଲୁ । ଘନଶ୍ୟାମ, ବେଣୁଧର, ଭାଇଗ, ସମସ୍ତଙ୍କୁ ଶିଖାଇ ଦେଇଛି । ସେମାନେ ମଡ଼ାନେଇ, ଜୁଇ ସଜାଇ ଖାନ୍‌ନଗରରେ ବସିଛନ୍ତି । ତୁ ଡେରି ନ କରି ଏଣୁ ଅନ୍ଧାରୁଅନ୍ଧ ଯାଇ ବୋଟକଇରେ ଶୋଇଯା । ତୋତେ ଉଠାଇବା ବେଳକୁ ପାଟି କରି କହିବୁ 'ଅବେ ମୁଁ ବଞ୍ଚିଲିଣି ।'

* * * *

ତହିଁ ଆରଦିନ ଖବର କାଗଜରେ ବାହାରିଲା—ଏତେ ଅକ୍ଷରରେ—

"ମଲା ମଣିଷ ବଞ୍ଚିଲା"

# ମୁଁ କିମତି ଘାସ କାଟିଲି

ଘାସ କାଟିବାଟା କଦାପି ଖରାପ ନୁହେଁ । ଆପଣମାନେ ଜାଣିଥିବେ ଆଜିକାଲି ଘାସରୁ ଖାଦ୍ୟ ପ୍ରସ୍ତୁତ କରିବାର ପ୍ରଣାଳୀ ବୈଜ୍ଞାନିକମାନେ ବାହାର କଲେଣି । କେତେବର୍ଷ ପରେ ଭାରତରେ ଲୋକସଂଖ୍ୟା ଯେତେବେଳେ ୨।୩ ଗୁଣ ବଢ଼ିଯିବ ସେତେବେଳେ ସଗର ବଂଶ ମାଟିଖାଇ ସମୁଦ୍ର କଲପରି ଆମେ ଘାସ ଖାଇଯିବା ଛଡ଼ା ଅନ୍ୟବାଟ ନଥିବ । ବର୍ତ୍ତମାନ three 'F's ଅର୍ଥାତ Food, Fodder ଓ Fuel ଅର୍ଥାତ୍ ଖାଦକ (ମନୁଷ୍ୟ), ପଶୁ ଓ ପାବକ (ନିଆଁ) ପାଇଁ କୃଷି କରିବାକୁ ପଡ଼ୁଛି । ସେତେବେଳେ ମଣିଷ ଘାସ ଓ ଖାଳ ଖାଇବେ । ସୁତରାଂ ଗୋଟିକରେ ସବୁ ହୋଇଯିବ । ତେଣୁ ଏଇ ଘାସ ଯୁଗ ଯେ ଅତି ଶୀଘ୍ର ଆଣବିକ ଯୁଗ ପରେ ପରେ ଆସିବ ଏଥିରେ ସନ୍ଦେହ ନାହିଁ ।

ତା'ଛଡ଼ା ଘାସରେ ବହୁତ ଭିଟାମିନ 'K' ଅଛି । ମୁଥା ମଧ୍ୟ ଗୋଟାଏ ଔଷଧ କବିରାଜ ଶାସ୍ତ୍ରରେ । ଘାସ ଖାଇଲେ ଆଉ ରୋଗ ବଇରାଗ ହେବ ନାହିଁ । ତଟକା ଘାସ ଖାଇଲେ ଗାଈ ଯେପରି ବେଶି ଦୁଧ ଦିଅନ୍ତି—ଆମ ଜନନୀମାନେ ସେପରି ହେଲେ ଦେଶର ଭବିଷ୍ୟତ୍ ଆମ ଶିଶୁ ସମ୍ପଦ ବଳିଷ୍ଠ ହେବେ ।

ବୈଷ୍ଣବ ଧର୍ମ କହେ—ହରି ଭଜିବାକୁ ହେଲେ—ତୃଣାଦପି ସୁନୀଚ ହେବା ଦରକାର । ତେଣୁ ଘାସ କାଟିଲେ ନିଶ୍ଚୟ ହରି ଭକ୍ତି ବଢ଼ିବ । ମନୁଷ୍ୟର ସ୍ୱର୍ଗବାସ ହେବ ।

ଏଇ ସାମାନ୍ୟ ଘାସରୁ ଗୋଟିଏ ଚାଣକ୍ୟଙ୍କ ଗୋଡ଼ରେ ବାଜିବାରୁ ଚାଣକ୍ୟ ଦିନେ ବୁଦ୍ଧି ପାଇ ନନ୍ଦବଂଶ ଧ୍ୱଂସ କରିଥିଲେ । ତେଣୁ ଘାସକୁ ତୁଚ୍ଛ ମନେ କରିବା ଉଚିତ ନୁହେଁ ।

ଆମ ବଡ଼ ଦେଉଳର ବଡ଼ ଠାକୁର ଓ ଜଗନ୍ନାଥ ସୁଭଦ୍ରାଙ୍କ ମୁଣ୍ଡରେ ଘାସ ଚଢ଼େ । ତେଣୁ ଘାସର ଆସନ ଠାକୁରଙ୍କ ଉପରେ ।

ବାହାଘରରେ ଅଷାଡ଼ୁଆ ବନ୍ଧାରେ ମଧ୍ୟ ଆମ୍ବପତ୍ର ସାଙ୍ଗକୁ ଦୁବ ବରକୋଳି ପତ୍ର ବନ୍ଧାହୁଏ । ଠାକୁର ଠାକୁରାଣୀ ପୂଜାରେ ଦୁବ ଲାଗେ । କଥାରେ ଅଛି ଯେଉଁଠି ଦାରୁ ନ ଲାଗେ ସେଠି ଦୁବ ଲାଗିଯାଏ ।

ଲୋକେ କହନ୍ତି—ନିଜ ବୁଦ୍ଧିରେ ଘାସ କାଟିବ ପଛେ ପର ବୁଦ୍ଧିରେ ଘୋଡ଼ା ଚଢ଼ିବ ନାହିଁ । ଘାସ କାଟି ସଇସ ପୋଷିହୁଏ । ଘୋଡ଼ାକୁ ପୋଷେ । ଅର୍ଥାତ୍ ମାଲିକ ଓ ମୂଲିଆ ଘାସ ଆଗରେ ସମାନ ।

ଘାସ ନଥିଲେ ଲୋକେ କାହା ଉପରେ ବସି ନେତାମାନଙ୍କ ବକ୍ତୃତା ଶୁଣନ୍ତେ ? ନେତାମାନେ ବକ୍ତୃତା ଦେଇ ନ ପାରିଲେ

ପୃଥିବୀ ପ୍ରଳୟ ହୋଇଯାନ୍ତା । ତେଣୁ ଏଇ ଘାସହିଁ ପୃଥିବୀକୁ ଟେକି ଧରିଛି । ମାଡ଼ି ମଣ୍ଡି ବସିଛି ।

ବାଅ ଜଲେ ବତାସ ହେଲେ ବଡ଼ ବଡ଼ ଦାରୁବୃକ୍ଷ ଟଳି ପଡ଼ିବେ ସିନା ଘାସର କ ଯାଏ ? ଘାସକୁ ବାଅ ବତାସ ଛୁଇଁ ବି ପାରେ ନାହିଁ ।

ପ୍ରକୃତ କବି ଯେ ସେ ଘାସର ମାହାତ୍ମ୍ୟ ବୁଝିଥିବ । କାରଣ ଗୋଲପ ଅବ ପୁଲ ସିନା କାନ୍ତା ବା ପ୍ରିୟାଙ୍କର କେଶବାସ-ଅଧର, ବକ୍ଷଅବ ସ୍ପର୍ଶ କରିବାର ଭାଗ୍ୟ ପାଅନ୍ତି ମାବ ଚରଣକମଳର ଯେ ମାଧୁରୀ ଅର୍ଥାତ୍ ପ୍ରିୟାର୍ ଚଳନ ଭିତରେ ଯେ କେତେ ମଜା ଓ କେତେ ରସ ତାହା କେହି ପାଇ ପାରନ୍ତି ନାହିଁ—ଘାସଛଡ଼ା ।

କଳା ଅଦମୀଗୁଡ଼ା ଘାସର ଅଦର କଦର ଜାଣନ୍ତି ନାହିଁ । ଗୋରିମାନେ ଘାସକୁ ଲଗେଇ ବଢ଼େଇ ମଣକରିବା ଶିଖାଇ ଦେଇ ଗଲେ । ତେଣୁ ବାରବାଟୀ ଷ୍ଟେଡ଼ିୟମରେ ଗୋରିଙ୍କ ଗୋଲମମାନେ ଘାସକୁ କେମିତି ଯତ୍ନରେ ରଖିଛନ୍ତି ଟିକିଏ ସମସ୍ତଙ୍କର ଅଖି ପଡ଼ିବା ଉଚିତ ଓ ଶିଖିବା ଉଚିତ ।

ଘାସ ସବୁଜ ହୋଇଥିବାରୁ ଏହା ଯେଉଁମାନେ ବେଶି ସମୟ ଠାରି ଦେଖନ୍ତି, ସେମାନଙ୍କୁ ଅଖିଡାକ୍ତରଙ୍କ ଅନ୍ଧାର ଘରଭିତରକୁ ଯିବାକୁ ପଡ଼ିବ ନାହିଁ ।

ଏଇ ଘାସର ମହିମା ବୁଝିଥିବାରୁ ଓଡ଼ିଶାର ଜଣେ ପ୍ରସିଦ୍ଧ ଲେଖକ "ଘାସଫୁଲ" ବହି ଲେଖିଛନ୍ତି । କବିସୂର୍ଯ ସୁବର୍ଣ ଦୀପରେ ଘାସ ଥୋଇ କାମଦେବଙ୍କୁ ବନ୍ଦନା କରିଛନ୍ତି—ଏକଥା ଅଧ୍ୟା-ପକମାନେ ଭଲଭାବେ ଜାଣିଥିବେ ।

ତେଣୁ ମୁଁ ଜଣେ ବି.ଏ. ଏଲ୍. ଏଲ୍. ବି. ହୋଇ dignity of labour ଶିକ୍ଷା ଦେବାପାଇଁ ଯେ ଘାସ କାଟିଲି ସେଥିପାଇଁ ଦେଶ ମୋଠାରେ ଋଣୀ ହେବା ଉଚିତ ।

ତଥାପି ମୁଁ ଯେ କାହିଁକି ଓ କିମିତି ଘାସ କାଟିଲି ତାହା କହିଲେ ଗୋଟିଏ କ୍ଷୁଦ୍ର ଉପନ୍ୟାସ ହେବ । ମନ ଧ୍ୟାନ ଦେଇ ଶୁଣନ୍ତୁ । ସଂକ୍ଷେପରେ କହେଁ—

ମୁଁ ଥିଲି ସେକ୍ରେଟେରିଏଟର ଅପରଗ୍ରେଡ୍ କିରାଣି, ନୂଆ ଆପଏଣ୍ଟମେଣ୍ଟ । ଅନେକ ଆଡ଼ୁ ଆସିଲା ପ୍ରସ୍ତାବ । ଗୁଡ଼ ପଡ଼ିଲେ ଯେମିତି ମାଛି ଭଣ ଭଣ ହୁଅନ୍ତି ସେମିତି ହେଲେ ମଝି ମାନେ କିଏ କନ୍ୟାର ମଉସା, କିଏ ବା କକେଇ, ଆଉ କିଏ ଭାଇନା । ତାହାର ଇୟତ୍ତା ନାହିଁ । ମାନ ଗୁଣ ବାଛିବାର ବାଟ ସବୁଠି ବନ୍ଦ । ଏକୁଟିଆ ମିସ୍ କମଳା ନାଁ ପାଇଲା । ମାତ୍ର ଏ ନାରଙ୍ଗୀ ନୁହନ୍ତି କି ସିଲହଟ୍ ନୁହନ୍ତି । ବାଲ୍ କ୍ରପ୍ ଦେଶୀ ଢଙ୍ଗ—ସେ ପୁଣି ଯାହାଲେ ବି ନାଲି କି ହଳଦିଆ ପଣ ତାର ନାହିଁ । କଥା କହିଲେ ଯେମିତି ପାଚିକରି ପଡ଼ିଲେ ବି ହେଇ ଶ୍ୟାମଳ । ତଥାପି ତାହାର ପଛରେ କୃଷ୍ଣକାଳୀ; ନା ତାହାର କଲେଜ ଶିକ୍ଷା । ସେତେବେଳେ ବାଲିକା ପାଠଶାଳା ଛୁଆ ଏମିତି ବାଲିକାଙ୍କ ଯାହାକୁ ସେମିତି ନଥିଲେ । ଜଣେ ଅନେକ ପିଏବା ବି.ଏ. ଏମେ ପଢ଼ୁଥିଲେ ତାଙ୍କ ଦର ଆଉ ସାଧାରଣ ଝିଅଙ୍କ ଦର ଭିତରେ ଅନେକ ପାର୍ଥକ୍ୟ ପିଲାଙ୍କ ଆଖି ଟିକ୍ ସେତିକି ତଫାତ ଯେତିକି ପାଠକ ବସିମାନଙ୍କ ଅଖିରେ ଗୋଟିପିଲା ଓ ବନାରସବାଲୀ । ମୁଁ ହଟିପଡ଼ିଲି କାଲୀକମଳୀବାଲୀ କମଳାକୁ ବାହାହେବାପାଇଁ । କମଳା ଏମ. ଏ. ପାସ କରିଥିଲା । ବାହାଘର ପ୍ରସ୍ତାବ ଛାଡ଼ିଲି ପରେ ପରେ ତାକୁ ବି ମିଳିଗଲା ପ୍ରଫେସର ଗ୍ରେଡ୍ ।

ବାହାପୂର୍ବରୁ କନୁ ଇଣ୍ଟରଭିଉ ସରିଥିଲା ଭାଗ୍ୟେ । ପରେ ଦେଖିଥିଲେ ବିବାହିତା ଝିଅ ହିସାବରେ ପାଶନମ୍ବର କମ୍ ମିଳିଥାନ୍ତା ନିଶ୍ଚୟ ।

ସେ ଯାହାହେଉ, କିନ୍ତୁ ଦିନ ଘର କରି ରହିଲା ପରେ ଦେଖାଗଲା ଯେ ସେ ଜଣେ ସ୍ଥିତପ୍ରଜ୍ଞା । ସଂଯମଣୀ । ଅର୍ଥାତ ଗୀତା ବଚନ ଅନୁସାର—ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ, ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ । ମୋର ସକାଳ ତାଙ୍କର ଦିନ । ମୋର ଦିନ ତାଙ୍କର ରାତି । ତାଙ୍କର ରାତି ମୋର ଦିନ । ସେ ଯାନ୍ତି ସକାଳୁ ଉଠିଲେଣି; ମୁଁ ଯାଏଁ ଦଶଘଣ୍ଟାରେ ସେକେନ୍ଦେବଏଠ୍ । ମୁଁ ତେଣୁ ନଫର କ୍ଲାନ୍ତ ହୋଇ ଶୋଇପଡ଼େଁ । ସେ ସାରା ଦିନଟା ଶୋଇ ସଞ୍ଜବେଳେ ଉଠନ୍ତି । ସେ ଚାହାନ୍ତି ରାତିଟାସାରା ସୁଖ ଗପ କରିବାକୁ । ମୁଁ ଚାହେଁ ଟିକିଏ ପାହାନ୍ତା ପହର । ସେତେବେଳକୁ ଜାଗିଲା ଯିବାପାଇଁ ସେ ଓଷ୍ଠସଂ ମିରର୍ ଆଗରେ ସ୍ନୋ ପାଉଡର ଧରି ଅସ୍ତବ୍ୟସ୍ତ । ଫଳରେ ଆମର ସମ୍ପର୍କଟା କ୍ରମେ ଜଡ଼ିଯାଇ ଏପରି ଷଷ୍ଠାଷ୍ଟକ ହେଲା ଯେ ବିଲକୁଲ୍ ନାଗନାଡ଼ି ଅମେଳ—ମୋର ଦେବଗଣକୁ ତାଙ୍କର ରାକ୍ଷସ । ମୋର ନାଗ ଯୋନିକୁ ତାଙ୍କର ବିତ୍ରା (ଅବଶ୍ୟ ଏଠା ଅନ୍ୟୋକ୍ତି ଭାଷାରେ) ଫଳରେ ଆମ ଗିରସ୍ତ ଭରସା ହୋଇ ମଧ୍ୟ ସଂପର୍କଟା ରହିଲା ଦେଢ଼ଶୁର ଭାଇବୋହୂ ଭାବରେ, ଅବଶ୍ୟ ତା ବୋଲି ମୋର ନବଜାତ କୁମାର ଓ କୁମାରୀମାନେ ମୋ ସାନଭାଇକୁ ବାପା ବୋଲି ଡାକିନଥିଲେ କି ତାର ଚେହେରା ସହିତ ମୋ ଛୁଆଙ୍କର କୌଣସି ସାମଞ୍ଜସ୍ୟ ନ ଥିଲା । କାରଣ ସେମାନେ ଜନ୍ମ ହେଲାବେଳେ ମୁଁ ଭଲକରି ଦେଖିଛି ତାଙ୍କ ଆଖିରେ ଚସମା ନ ଥିଲା । ମୋ ସାନଭାଇର ଆଖି ଖରାପ । ତେଣୁ ସେ ଚସମା ବୋଝିଜୋର ପିନ୍ଧେ ସଦାଉ ।

ଯାହେଉ—ଏସବୁ କାରଣରୁ ଅମର ଛୁଅ ପିଲା ହେବାରେ କୌଣସି ବ୍ୟାଘାତ ଘଟିନାହିଁ । କିମ୍ବା ଏଥିପାଇଁ ଆମ ଭିତରେ ବାନ୍ଧ ଟିଆ ହୋଇନାହିଁ । ଅସଲ କଥାହେଲା କମଳାର ଅଭିଆଡ଼, ବୁଢ଼ୀ, ପ୍ରଫେସର ସଙ୍ଗିମାମାନେ କମଳାକୁ ହିଂସାକରି ଯାହାଣ୍ଡ ଅସୁଣ୍ଡ କହିବାରେ ଲାଗିଲେ—ବାହା ନ ହେବ ନାହିଁ-ଏମିତ କରାମା ଘଇତା କଏ କରିବଲେ ମା-ଯୁଗ ନଗଲ ଟେବଲକୁ ନାଚୁଣୀଯୋଗ୍ୟ ପର । କମଳା ମାଠପଢ଼ୀ ହେଲେ କ ହେଲା, ବୁଦ୍ଧି ଟିକଏ କମ୍ । ସମ୍ଭବ ସେଥିପାଇଁ କରାମା ଘଇତାକୁ (ଘଇତା ଶବ୍ଦକୁ ସରକାର ଯେପରି ଅଶ୍ଳୀଳ କହି ଲେଖକ ବିରୁଦ୍ଧରେ ମକଦ୍ଦମା ଦାଏର ନ କରନ୍ତୁ । କାରଣ ତାଙ୍କର ଜାଣିବା ଉଚିତ ଯେ ଘଇତା ଶବ୍ଦ ଗୃହୀତାର ଅପଭ୍ରଂଶ ।) ଧୂଣାକଲେ ମଧ୍ୟ ଔରସଜ ସନ୍ତାନର ଗର୍ଭଧାରିଣୀ ସେ ହୋଇପାରିଲେ । ଏହି ମୂର୍ଖତା ଦୋଷରୁ ସେ ଏତକ ବୁଝି ପାରିଲେ ନାହିଁ ଯେ ତାଙ୍କ ଅଭିଅଡ଼ ସଙ୍ଗିମାମାନେ ଲାଙ୍ଗୁଳହୀନ ଶୃଗାଳ ପରି ଉପଦେଶ ଦେଉଛନ୍ତି । ତଥାପି ତାଙ୍କରି କଥାରେ ସେ ମାତ ମୋତେ କହିଲେ ହଇହୋ—ମତେ ବଡ଼ ଅପମାନ ହେଉଛି । ତମେ କରାମାଗିରି ଛାଡ଼ିଦିଅ ।” ମୁଁ କହିଲି—ଛୁଅପିଲା ? “ମୁଁ ଯେତକ ପାଉଛି ସେତକରେ ଭଣ ଚଳିବା ନାହିଁ ?” ସେଦିନ ମୋତେ ଲାଗିଲା—ଏ ତ କେବଳ ଏ ଜୀବନର ନୁହେଁ—ମୋର ଜନ୍ମଜନ୍ମର ସଙ୍ଗୀ । ବାସ୍ତବିକ ଏଭଳି ପତ୍ନୀ ପାଇ ମୁଁ ଧନ୍ୟ ହେଲି । କିନ୍ତୁ ସେତେବେଳେ ଅଉ ପୂର୍ବଜମାନଙ୍କ କଥା ମନେପଡ଼ିଲା ନାହିଁ—ସେଇ ଦୁର୍ଭାଗ୍ୟ । ସେମାନେ ଠିକ୍ କହିଥିଲେ—ଶୈଶବରେ ପିତା, ଯୌବନରେ ସ୍ୱାମୀ ଓ ବାର୍ଦ୍ଧକ୍ୟରେ ପୁତ୍ରର ଆଶ୍ରୟ ବିନା ବନିତାର ସ୍ୱାଧୀନ-

ଭାବରେ ଚଳିବା ଅନ୍ୟାୟ । କାରଣ ବାଘ ଥରେ ମଣିଷ ଖାଇଲେ ଆଉ ରକ୍ଷା ନାହିଁ ।

ଯାହାହେଉ ମୁଁ ଓକିଲି ପଢ଼ିଲି । ହଠାତ୍ କେଉଁ କନ୍ୟା ନ ମିଳୁଥିବା ଦରବୁଢ଼ା ଓକିଲ ପଡ଼ୋଶୀ ଜଣେ ଝିଅଙ୍କ ସହିତ ବୁଢ଼ୀକୁ ଯେଉଁଦିନ ବାହାହେଲେ ସେଦିନ ସେ ଆସି କହିଲେ, ତମେ ଓକିଲାତି ପଢ଼ । ପଢ଼ିଲି । ମାତ୍ର ଜୀବନଟା ତ ମୋର ଆଦର୍ଶରେ ଗଢ଼ା । ମୁଁ କହିଲି "ଡାର୍ଲିଂ, ମୁଁ ଗୋଟିଏ ଆଦର୍ଶ ଓକିଲ ହେବି । ମୋଠାରେ ଅନ୍ୟାୟରେ ଓକିଲାତି ଚାଲି ଆସିବ ନାହିଁ । ମିଛକଥା ହେବ ନାହିଁ, ବାସ୍ତବରେ କୋର୍ଟକୁ ସାହାଯ୍ୟ କରିବା ଓକିଲ୍‌ର ଧର୍ମ । ପଇସା ନହେଉ ପଛେ, ମୁଁ ତା କରିବି ହିଁ କରିବି ।"

ପ୍ରେୟସୀ କହିଲେ—କାମିନୀ ଯିଏ କରନ୍ତି ତାର କାଞ୍ଚନ ବାଦୁଡ଼ି ବଡ଼ ମାରାତ୍ମକ । ଯେ ନ୍ୟାୟ ବା ସତ୍ୟକୁ ଧରିବ ସେ କାମୁଡ଼ିଏ କାହିଁକି ହେବ ?

ମୁଁ କହିଲି —କାମିନୀ ଓ କାଞ୍ଚନ ବିନା ଦୁଇଅଡ଼ୁ ଆସିଲେ ମଣିଷ ଚୁପ ପଡ଼େ—ମାତ୍ର କାମିନୀ ଯେଉଁଠି ନିଜେ କାଞ୍ଚନ କାଢ଼େ ସେଠି ଚିନ୍ତା କଣ ?

ପ୍ରେୟସୀଙ୍କ ମୁହଁ ଟିକିଏ ଫୁଲିଉଠିଲା—ଚାତକ ପିଠାବାଲା । ସେ କହିଲେ— ତମ ଇଚ୍ଛା ।

ପଢ଼ିଲି ଓକିଲାତି । ଦେଖିଲି, ବାସ୍ତବ ବା ଆଇନର ମୂଳମନ୍ତ୍ର ହେଲା— "ଦୋଷୀ ପଛେ ଖଲାସ୍ ହେଉ, ମାତ୍ର ନିର୍ଦ୍ଦୋଷ ଦଣ୍ଡ ନ ପାଉ ।" ଓଃ । କେଡ଼େ ବଡ଼ ମହତ୍ ବ୍ୟବସାୟ ଏ ଓକିଲାତି ବାସ୍ତବିକ ! ମୁଁ ଯେଉଁଦିନ ଜୁରିସ୍‌ପ୍ରୁଡେନ୍‌ସରୁ ଏକଥା ପ୍ରଥମ ଜାଣିଲି—ସେଦିନ ଆସି ତାଙ୍କୁ କହିଲି –"ସଖି—ଏଥର ଆମ ପିଲେ ନିଶ୍ଚୟ କହିବେ—'ଆକାଶଠୁଁ ବଡ଼ ପିତା—ମାତା ବଡ଼

ପୃଥିବୀ ଅପେକ୍ଷା ।' ଅର୍ଥାତ୍ ଆକାଶଠୁଁ ବଡ଼ ଓକିଲ, ଅଧ୍ୟାପିକା ପୃଥିବୀ ଅପେକ୍ଷା । ଉତ୍ତମ ପେଶା ଯେମିତି—ନୋବେଲ ବା ମଧୁର ହେମା ଡେଭଲା ଅଟୁର ମଧୁତର ।" ସେ ପ୍ରତିବାଦ କରି କହୁଥିଲେ—"ନା ନା 'ଆକାଶଠୁଁ ବଡ଼ ମାତା—ପିତା ବଡ଼ ପୃଥିବୀ ଅପେକ୍ଷା' ବୋଲି କହ ।" ମୁଁ ବାଧ୍ୟହୋଇ ମାନିନେଲି ।

ଯଥାସମୟରେ ଓକିଲାତି ପାସ୍ ହେଲି । ଧାଇଁଲି ବରଗଛ ମୂଳକୁ । ଲାଇସେନ୍ସ ପାଇଁ ମିସେସ୍ ତାଙ୍କ ଭାନିଟିବ୍ୟାଗ ଓଲଟାଇ କରି ଟଙ୍କା ଦେଲେ । ଏଇଠି ଆରମ୍ଭ ହେଲା ପର ବୁଦ୍ଧିରେ ଘୋଡ଼ା ଚଢ଼ା ।

ଓକିଲାତି କରି ମୁଁ ପଢ଼ିଲି crime ବା ଅପରାଧ ସମ୍ବନ୍ଧରେ ଅନେକ ଗବେଷଣା କଲି । ବି. ଏ. ରେ ମୋର ମନୋବିଜ୍ଞାନ ତ ଥିଲା । ଦେଖିଲି—ମନୁଷ୍ୟ ପ୍ରକୃତରେ ଅପରାଧୀ ନୁହେଁ । ତାର ପାରିପାର୍ଶ୍ୱିକ ଅବସ୍ଥା ତାକୁ ଅପରାଧୀ କରାଏ । ସେ ଅବସ୍ଥା ବଦଳାଇ ଦେଲେ ମନୁଷ୍ୟ ଆଉ crime ବା ଅପରାଧ କରିବ ନାହିଁ । ତେଣୁ କୌଣସି ଲୋକ ଅପରାଧୀ ନୁହେଁ । ତେଣୁ ଜୁରିସ୍ ପ୍ରୁଡେନ୍ସ ନୀତି ଅନୁସାରେ କାହାର ଦଣ୍ଡ ପାଇବା ଅନୁଚିତ । ପହିଲି ମକଦ୍ଦମାରେ ଯେଉଁ ଦିନ ଏଇ ଆରଗୁମେଣ୍ଟ କଲି ସେଇଦିନ ଆମ ବାର୍‌ରେ ମୋ ନାମ ରଖାଗଲା—ନିରପରାଧୀ ବା ଗୋବାପୁଅ ଓକିଲ ।

ସ୍ଥିର ଛମାସ ପରେ ଗୋଟିଏ ମକ୍‌କେଲ ଆସିଲା । ଫୌଜଦାରୀ କେଶ୍ । ମାଡ଼ ଖାଇଛି । ମୁଁ କହିଲି—"ଦେଖ, ସେ ତ କୌଣସି ଦୋଷ କରିନାହିଁ । ତାର ପରିପାର୍ଶ୍ୱ ତାକୁ ମାରିବାର ପ୍ରବୃତ୍ତି ଦେଇଛି । ତମେ ତାକୁ ଦଣ୍ଡ ଦେବାର ଚେଷ୍ଟା ନକରି ପରିପାର୍ଶ୍ୱଟା ବଦଳାଇ ଦିଅ ।"

ମକ୍‌କେଲଟା ମୋଟେ ଗଳଗଳ ହୋଇ କୁହୁଁ କହିଲା—"ପରିପାର୍ଶ୍ୱ କଣ ବଦଳାଇବ ବାବୁ, ସେ ପରା ମୋ ଚାରିପାର୍ଶ୍ୱରୁ ୮ ହାତ ମାତ୍ର ଅସିଛି । ମୁଁ ତା ହାତ ଜପାଡ଼ିଦେଲରୁ ମୋ ଉପରେ ପାହାର ।"

କଣ କରିବ ? ମକଦ୍ଦମା ଅଗତ୍ୟା ଟେନିଲି । ମକ୍‌କେଲକୁ ଖଲାସ କରିପାରିଲି ନାହିଁ । ଜୋରରେ ମୁଦାଲକୁ ପଚାରିଲି, ତମେ ତାଙ୍କୁ ବାଡେଇଥିଲ । ତମର ପାରିପାର୍ଶ୍ୱିକ ଅବସ୍ଥା ଖରାପ ଥିଲା କି ?

ସେ ତାର ଉତ୍ତର ଦେଲା ଅତି ସହଜ ଭାବରେ 'ହଁ'

"ତମେ ସେତେବେଳେ ଇଚ୍ଛାକରି ମାଡ଼ ଦେଇଛ ନା ?'

"ନାଁ"

"ପାରିପାର୍ଶ୍ୱିକ ଅବସ୍ଥା ତମକୁ ଖରାପ ଲାଗିଲା କି ?

"ହଁ ।"

"ତେବେ ମାଡ଼ ଦେବାର ତମର ଇଚ୍ଛା ନ ଥିଲା ?"

"ନା ।"

ଶେଷ ମୁଁ ଅର୍‌ଗୁ କଲି—"ଧର୍ମାବତାର କାଇମରେ ଇଣ୍ଟେନ୍‌ସନ୍‌ଟା ବା ଉଦ୍ଦେଶ୍ୟଟା ଅଗ ଦେଖିବା ଦରକାର ।"

ଏତକବେଳେ ମୋ ମକ୍‌କେଲର ଚାଉଟର ପଛଅଡ଼୍ ଖେଞା ମାରି କହିଲା—"ଅପଣ ମୁଦାଲ ପକ୍ଷ ଅର୍‌ଗୁମେଣ୍ଟ କରୁଛନ୍ତି ।'

ମୁଁ ତତ୍‌କ୍ଷଣାତ୍‌ କହି ପକାଇଲି—'ଅଜ୍ଞା, ପ୍ରବୃତ୍ତଙ୍କ ମତରେ conscious ବା ସଜ୍ଞାନ ଓ ପ୍ରଜ୍ଞା ଅବସ୍ଥାରେ ଗୋଟାଏ ଅପରାଧ, ଅତି ବେଶି ଅମଳ ହୋଇଗଲେ ସେ unintentionally ବା ବିନା ଅଭିପ୍ରାୟରେ ମଧ୍ୟ କାର୍ଯ୍ୟ କରେ ବା crime କରେ । ସୁତରାଂ ମାଡ଼ ଦେବାର ଅପରାଧଟା ଏଙ୍କର conscious ବା ଜ୍ଞାନ ଅବସ୍ଥାରୁ

ଯାଇ—sub-conscious ଓ unconscious ବା ଅବଚେତନ ଓ ଅଚେତନ ଅବସ୍ଥାକୁ ଅସିଯାଇଛି । ତେଣୁ ସେ ଯାହାକୁ କହନ୍ତି ଅଜ୍ଞାନ ବାଉଁଅ ବାଡ଼େଇଛି ।'

ବନ୍ଧୁବର୍ଗ, ସ୍ୱପକ୍ଷ ଓକିଲ୍ ସମସ୍ତେ ଠୋ ଠୋ ହୋଇ ହସିଲେ । ମୁଁ ଲଜ୍ଜପାଇ ଫେରି ଅସିଲି ।

ତା ପରଠୁଁ କଣ ହେଲା କି ଜାଣି ଅଉ ମକ୍‌ଦ୍ଦମା ଦେଖିବା ଆସିଲେ ନାହିଁ । ଭାବିଲି—ଏହା ଭଗବାନଙ୍କର ପରୀକ୍ଷା । ଯେଉଁମାନେ ସତ୍ୟପଥରେ ଚଳନ୍ତି ସେମାନେ ପ୍ରଥମେ ଏମିତ ଅବସ୍ଥା ହୁଅନ୍ତି । ତା ପରେ ଧନ, ଜନ, ଗୋପଲକ୍ଷ୍ମୀ ପେଲି ପଶିବେ । ତେଣୁ ନିତ ସଞ୍ଜବେଳେ ମୁଁ ଗାଏ "ସତ୍ୟପଥେ ଧର୍ମପଥେ ଦେଖନା-ଯାଅ ମୋତେ, ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ ।"

ତଥାପି ଭଗବାନଙ୍କର ପ୍ରେମ, ଠଙ୍କା ଆକାରରେ କେବେ ଅସିଲା ନାହିଁ । ଦିନକର ଗୋଟିଏ ଲୋକ ଅସି ଗୋଡ଼ତଳେ ପଡ଼ିଲା । ବଡ଼ ଗରିବ । ତେଣୁ ଚୋରି କରୁଥିଲା । ଧରା ପଡ଼ିଛି । ଜାମିନରେ ଖଲାସ ହୋଇଛି । ମକଦ୍ଦମା ଲଢ଼ିବାକୁ ହେବ—ବିନା ପଇସାରେ ।

ଭାବିଲି ଏତେଦିନେ ଭଗବାନ ଦରିଦ୍ରନାରାୟଣ ରୂପେ ଅସିଛନ୍ତି । ତାକୁ କହିଲି—ତୁ ଅମ ଘରେ ରହ । ପରିପାର୍ଶ୍ୱ ବଦଳିଗଲେ ତୋର crime mentality ବଦଳିଯିବ । ମୋର ସ୍ତ୍ରୀ ଜଣେ ଅଧ୍ୟାପିକା । ତାଙ୍କ ସହିତ ବାସକଲେ ତୋର ପ୍ରବୃତ୍ତି ଉନ୍ନତ ହେବ ।

ସେ ଚୋର ଅମ ଘରେ ରହିଲା । ତାକୁ ଖଲାସ୍ କଲି । ସେ କୃତକୃତ୍ୟ ହେଲା । ଜୀବନରେ ଗୋଟିଏ ମୋକଦ୍ଦମାରେ ଜୟଲାଭ କରିଥିଲି ବୋଲି ମୋର ଏବେ ବି ସେ କଥା ମନେ ଅଛି । ଲୋକଟି

ଆନନ୍ଦରେ ଥାଏ । ନୀତି ଓ ନ୍ୟାୟର ଫଳ ସ୍ୱଚକ୍ଷୁରେ ଦେଖି ମୁଁ ଖୁସି ହୋଇଗଲି ।

ମାତ୍ର ଏ କ' କଥା ! ଦିନେ ସକାଳୁ ଉଠିବା ବେଳକୁ—ସ୍ତ୍ରୀ ଝଲେକା ନଥାଇ ଚିତ୍କାର କରୁଛନ୍ତି—"ଅସ୍ଥ ଓଝାଳଡ କଲେ ଏ ମୋର ସବୁ ଉଜୁଡ଼ି ଗଲା—ମୁଁ କଣ କରିବି" ନିଦରୁ ଉଠି ଦେଖିଲି ଗାଁ ସାର ଲୋକେ ସ୍ତ୍ରୀଙ୍କ ଚିତ୍କାରରେ ରୁଣ୍ଡ ହୋଇ ଗଲେଣି । ବୁଝିଲି—ପାଠପଢ଼ୀ ଅପଢ଼ୀ ସବୁ ମାଇପେ ସମାନ । ମୁଣ୍ଡ ବାଡ଼େଇ, ଦାନ୍ତ ନିକୁଟି ଚିତ୍କାର ଛାଡ଼ୁଛନ୍ତି—"ମୋର ସବୁ ନେଇଗଲା ସେ ବାଣ୍ଡପଡ଼ା, ମୁଁ କଣ କରିବିଲୋ ମା ! କଳାକନା ବୁଲେଇ ଦେଇ ଗଲା—ଗୋଟିଏ ବୁନ୍ଦା ବି ରଖିନାହିଁ ଲୋ ମା !"

ତା'ପରେ ଅବସ୍ଥାଟା ପାଠକେ ଅନୁଭବ କରିପାରୁଥିବେ । ତାଙ୍କର ମୋର ଏମିତ ଘୋଡ଼ା ମଇଁଷିର ମେଳକ ହେଲା ଯେ—ମୁଁ ।

ପୁଜ ନିବେଶି ପତ୍ନୀ ପାଶେ—
ଭୁଲିଲି କାଟିବାକୁ ଘାସେ
କହନ୍ତି ସଦାଶିବ ଦାସେ ।

# ମୁଁ କେମିତି ବାବୁ ହେଲି

ମା' ମୋର ମୋତେ କୋଢ଼ିଆ ବୋଲି ସବୁଦିନେ କହେ । ପିଲଦିନୁ ରଣ୍ଡି ପୁଅ ଅନନ୍ତା ହେଇ ମୁଁ ବୁଲି ଆସିଛୁ । ଛମି ଧମାଣ ବଖର ଲଗେ । ମା ଧାନ କୁଟି ଆଣି ଦିଏ । ସକାଳୁ କୁଣ୍ଡା ପିଠା, ନହେଲେ ବଢ଼ା ଭାତ—ସଞ୍ଜକୁ ପଖାଳ, ଛାମୁଡ଼ା ଖୁଦୁଆ । ତାପରେ ମାର ଉଅଁ । ପଢ଼ାପଢ଼ି ନଦାବଦ । ଶ୍ରୀପଞ୍ଚମୀ ଦିନ ଗାଡ଼ୁଅ ଅଣ୍ଡ୍ରଲାରେ ସବୁଦିନେ ମୋ ଭାଗରେ ବେଠି ।

କ୍ରମେ ବୟସ ହୋଇଗଲା ଅଠ..। ଦେଖିବାକୁ ମୁଁ ଅସୁନ୍ଦର ନୁହେଁ । ସେଥିପାଇଁ ମାଇପେ ମୋତେ ଖୁବ୍ ଭଲପାଉଥିଲେ । ମୁଁ ମଧ୍ୟ ମାଇପଙ୍କ ସାଙ୍ଗ ଛାଡ଼ିପାରେ ନାହିଁ । ଏହି ଦୋଷରୁ କେତେ [illegible] [illegible] [illegible] ମାଇ[illegible] କହନ୍ତି । କିନ୍ତୁ ମୁଁ

କଣ କହିବି—ଯେତେ ମନାକଲେ ବି ମାଇପେ ସେ କାନ୍ଦ ଧରି ଛାଣିବେ ।

ଖାଲି ସେତିକି ନୁହେଁ—ଗାଁ ଝିଅଙ୍କ ଫୁଲଘର ଖେଳାରେ ମୁଁ ଯେଉଁ ପଟ ନିଏଁ ତା ଘର ସବୁଠୁ ବଢ଼ିଆ । ସେଥିପାଇଁ ଝିଅ-ମାନେ ମୋତେ ଖୁବ୍ ପସନ୍ଦ କରନ୍ତି । ମୋତେ ନ ଦେଖିଲେ ତ କାହାକୁ ଭାତ ରୁଚେ ନାହିଁ । ଅଭି ମୋତେ ଦେଖି ସମସ୍ତେ ବର ସାଜରେ ହାତ ଛନ୍ଦି ହୁଅନ୍ତି—କିଏ କହେ ସେ ମୋର—ଘ···; କିଏ ତାର ଜବାବ ଦିଏ; ମୋର ଘ···ହେଇଥିବ । ମୋ ପଛଅଡ଼େ ମୋ କାନରେ ବାଜିବା ଭଳି ବଡ଼ା ଫୁସ୍‌ଫୁସ୍ ସ୍ୱରରେ କୁହାକୁହି ହୁଅନ୍ତି । ମୋ ଯୁକ୍ତି ଖାଲି କୁଳିକି ଉଠେ । ହେଲେ ଗୋଟି ଗୋଟି ହୋଇ ଲଳିତା, ବିଶାଖା, ମଲ୍ଲୀ, ଚମ୍ପା, ଚେହେଲୀ, କୋଇଲି ସମସ୍ତେ ବାହା ହୋଇଗଲେ, ଏଣେ ମୋ'ର ଭାଗ୍ୟରେ ବର ବେଶର ଯୋଡ଼ା ଆଜି ହେଲା ନାହିଁ ବଧାଭାର ।

ଦିନେ ସକାଳୁ ବସିଛି—ମା' ଡାକୁଣୀ ଦଶଥର ଗାଳି ଦେଇ ଗଲାଣି—ମୁଁ ଖାଲି କହୁଥାଏଁ—"ହଉଲେ ହଉ, ଦେଖିବୁ ତୋ ପୁଅ କଣ ହବ ପୁଣି"—ମା କହୁଥାଏ 'ହେଇ ହେଇ ଅଭ ପୁଣି ଗୋଟାଏ କଣ ହବୁ ମ ! ଯାହାରେ ତ ଖଣ୍ଡି ପଟରେ ଠିଆ ହେବୁ—ହେଲେ ରାଜକୁମାରଟାଏ ହୋଇଥାନ୍ତୁ—ମୋ ଆଖି ଦେଖିଥାନ୍ତା !"

ମୁଁ କହିଲି—"ହଉଲେ ହଉ—ରହୁଥା—ଏକାଳେ ରଜା କଣ ରହୁଛବେ କଲେ—ରହିବେ ମନ୍ତ୍ରୀ । ମୋତେ ସବୁ ମନ୍ତ୍ରୀଙ୍କ କୁମର ବୋଲି ଯଦି ନ କହିଲନ୍ତି—"

ମା ମୋର ମୋତେ ମାରେ କି ନମାରେ—"ଏଡ଼କି ମିଣିପିଠା ଏ ହେଲଣି, କଥାକହି ଅସିଲି ନାହିଁ । ହଇରେ—କଉଁ ମନ୍ତ୍ରୀର ମାଇପ ମୁଁ—ଏଁ ?"

ଥକ୍କାଲ୍ ପକାଇ କହିଲି—"ନାଇ ଲୋ ମା—ପୁଅ କିଏ, ଅଜ୍ଜୁଅଇଁ କିଏ ? ମୁଁ ସେଇଆ କହୁଥିଲି ନା—ମୁଁ ମନ୍ତ୍ରୀର ଜୁଅଇଁ ହେବ । ମୋତେ ଜ୍ୟୋତିଷ କହୁନ୍ତି—ନ ହେବ ତ ମୋ ନା କ୍ଷେମସାଗର ନୁହେଁ—ଗାଁ ଯାକ ମୋତେ କହୁଲେଣି—

'ଧନ୍ୟ ଧନ୍ୟ ହେ କ୍ଷେମ ସାଗର

ମା ଧାନକୁଟୀ ପୁଅ ନାଗର ।' ମୁଁ ପରା ନାଗର ଲୋ !

ଅଧଘଣ୍ଟାଏ ଯାଇ ନାହିଁ— ତିନିଜଣ ଭଦ୍ରଲୋକ ଅସି ପଚାରିଲେ —"ସୁଦର୍ଶନ ମହାନ୍ତି ଘର କିଏ ?"

ମୁଁ କହିଲି—"କି କାହିଁକି—ମୋ ବାପର ଶ୍ରାଦ୍ଧ ବାଡ଼ିବାକୁ ତମେ କିଏ ?"

ସେମାନଙ୍କ ଭିତରୁ ଜଣେ କହିଲା—"ତେବେ ଅପଣ ହେଉଛନ୍ତି ସୁଦର୍ଶନ ମହାନ୍ତିଙ୍କ ପୁଅ ? ନମସ୍କାର—"

ମୁଁ କହିଲି—"ଏଁ ଃ, ସୁଦର୍ଶନ ମହାନ୍ତିଙ୍କ ପୁଅ ? ତେମେ ତ କଥା କହି ଜାଣିଲ ନାହିଁ—କିଁ ତଅ କଉଲ ପାଠଅ ଭଦ୍ରଲୋକ ହେ ! ? ପୁଅ ନୁହେଁ—ପୁଅ ନୁହେଁ—କହନ୍ତୁ ପୁତ୍ର-ମଣି ।"

ସେମାନେ ମୋ ପାଣ୍ଡିତ୍ୟର ପରିଚୟ ନିଶ୍ଚୟ ପାଇ ଯାଇଥିବେ । ତା'ପରେ ସେମାନେ ମା ସାଙ୍ଗରେ କଣ ଫୁସ୍‌ଫାସ୍ ହେଲେ କିଜାଣି, ବଳଦ ବେକରେ ଜୁଆଳି ପକାଇଲା ପରି—କମ୍ପା ହାଣକୁ ନେଉଥିବା ଛେଳି ବେକରେ ଫୁଲମାଳ ଓ ସିନ୍ଦୂର ଦେଲାଭଳି—ମୋ କାନ୍ଧରେ ଗୁଦର, ମୁଣ୍ଡରେ ଚନ୍ଦନପାଟି ଲଗାଇ ଧରି ନେଇଗଲେ ।

ମୋତେ ତ ସପନ ଦେଖିଲପରି ଲଗୁଥାଏ । ଦେଖୁଁ ଦେଖୁଁ ମୁଁ ଯାଇଁ ଜଣଙ୍କ ଘରେ ପହଞ୍ଚିଲି । ସେଠି ଯୋଡ଼ନାଗରା, ମହୁରୀ ବାଜୁଛି । ମୁଁ ପହଞ୍ଚିଲାକ୍ଷଣି ହୁଲେଇଲ ପଡ଼ିଗଲା । ସମସ୍ତେ ଯିମିତି ଅଖି ମଳି ମଳି ମୋତେ ଚାହିଁ ବସିଥିଲେ । ଶଙ୍ଖ ବାଜିଲା —ହୁଳହୁଳି ମଙ୍ଗଳ । ପଛେ ମାଇପେ ମୋ ଦେହରେ ହଳଦୀ ବୋଳି ଦେଇ ଗାଧୋଇଦେଲେ । ନୂଆ ଲୁଗା, ଚନ୍ଦନ ପାଟି — ତାପରେ ହୁଁ-ହୁଁ, ଝୁଁଣୁ ଝୁଁଣୁ ରୁଣୁଝୁଁଣୁ ଝୁଁଣ୍ଟିଅ ବାଜେ । କେଁରେଇ କେଁରେଇ ଗୁହୁଁଥାଏ — ତଳକୁ ପାଦ ଦୁଇଟି ପଡ଼ୁଛି ତ — ସତେକି ପଦ୍ମଫୁଲ ଫୁଟି ପଡ଼ୁଛି । ତାପରେ ଅଉ କଣ କହିବି — ଯେତେବେଳେ ହାତରେ ହାତ ରଖି ଗଣ୍ଠି ପଡ଼ିଲା—ଭାବୁଥାଏଁ — ମୋର ମରଦପଣ ପିଟିଗଲା ଏଥର । ଅଉ କିଏ କହିବ ମାଇଚିଆ ବୋଲି—ବାସ୍ ଏ ଗଣ୍ଠି ଅଉ ନ ଫିଟନ୍ତା କି ।

କିନ୍ତୁ ଗଣ୍ଠି ଫିଟିଲା । ଅମ୍ଭେ ଯାଇଁ ମଜଲିସ୍‌ରେ ବସିଲୁଁ । ମୋ ପାଖରେ ବହୁତ ଭାଇ ହେବ କିଏ ଗୋଟାଏ ଇଞ୍ଜିନିଅ ପଢ଼ା ଟୋକା କହିଲା—"ଅପଣ ଇଂରାଜୀ ପଢ଼ିଛନ୍ତି ?"

ମୁଁ କହିଲି—"ହଁ ହଁ—ଅମକୁ ପରୀକ୍ଷା କରୁଛ ? ଅମେ ଏ ବି ସି—"

ଏତିକି କହୁଛି କି ନାହିଁ—ମୋର ଏକ ଇଂରାଜୀ ପାଠୁଆ ଶଳା ଅଙ୍ଗା ଥାଏ, ସେ ମୋ ପାଟିରୁ କଥା ଛଡ଼ାଇ କହିଲା — "ଅଜ୍ଞା କଥା କଣ ଜାଣନ୍ତି ନାହୁଁ—ସେ ଟିକିଏ ଖେଅସିଆ ଲୋକ— ହଇବେ ଶଳା ନାତଟୋକା—ବର ହୋଇ ସବୁ ଠାପରି କରନ୍ତି ?, ଅଜ୍ଞା ସେ କହୁଛି—ଅପଣ ମୂଳରୁ ପଢ଼ିଲେ ଯେବ A, B, C, ଅମ ମେଟ୍ରିକରେ ବି ସେ A, B, C, ଅଙ୍ଗଲ ବା ସମକୋଣ ପଢ଼ିବାକୁ

ହେବ । ପିଲାଟି ଆମର ଅଣ୍ଡର ମାଟ୍ରିକ—ମିଛ କାହିଁକି କହିବା—ନା କଣ କହୁଛ ?—"

ବରଯାତ୍ରୀମାନେ ସମସ୍ତେ ଏକ ସ୍ୱରରେ କହିଲେ—"ହିଁ ହିଁ ।"

କୌଣସିମତେ ସେଠୁ ଉଦ୍ଧାର ପାଇ ବାହା ହୋଇ ଆସିଲି । ଶୁଣିଲି—ମାଇପ ମୋର ମହା ପାଠୋଇ । ସ୍କୁଲରେ ପାଠ ପଢ଼ୁଥିଲା । କୁଆଡ଼େ ବେଶି ପାଠ ପଢ଼ିଲେ ପେଟ ସବୁ ଏମିତି ଫାଟିପଡ଼େ ଯେ ମାଇପେ ଆଉ ଛୁଆ ଜନମ କରିବା ବନ୍ଦ କରନ୍ତି । ସେଥିଯୋଗୁଁ ଆମ ମାଇପଙ୍କ ପାଇଁ ଯେଉଁ ବର ଆସିଥିଲା ସେ ପାଠପଢ଼ା କଥା ଜାଣି ବେଦୀରୁ ଉଠିଗଲା । ଝିଅ ମଙ୍ଗୁଳା ହୋଇ ସାରିଥିଲା । ଆଉ କରନ୍ତେ କଣ—ମୋ ଭଳି ଯୋଗ୍ୟ ବର ଥାଉଁ ଥାଉଁ ସେ ଅଉ ବା ଯାଆନ୍ତେ କୁଆଡ଼େ—ଅଣିଲେ ମତେ ଧରି ।

ଅବଶ୍ୟ ମୋ ଶ୍ୱଶୁର ମନ୍ତ୍ରୀ ନ ହେଲେ ମନ୍ତ୍ରୀଙ୍କ ପାଖରେ ଥାଇ—ଅର୍ଥାତ୍ ମନ୍ତ୍ରୀଙ୍କ ମନ୍ତ୍ରୀ ରୂପେ ମନ୍ତ୍ରୀଙ୍କୁ ମନ୍ତ୍ରଣା ଦିଅନ୍ତି । ଭୋଟ ଯୋଗାଡ଼ କରିଦିଅନ୍ତି । ସଭା ସମିତି କରି ଡାକନ୍ତି । ଚାନ୍ଦା ଉଠାଇ ମନ୍ତ୍ରୀଙ୍କୁ ପାର୍ଟି ଦିଅନ୍ତି—କିଛି ଅଣ୍ଟିରେ ଗଣ୍ଠି ବି ବାନ୍ଧନ୍ତି । ସମସ୍ତେ କୁହାକୁହି ହୁଅନ୍ତି—ଆସନ୍ତା ଥର ଭୋଟରେ ଠିଆ ହୋଇ ଶଶୁରେ ବି ହେବେ ମନ୍ତ୍ରୀ—ନ ହେଲେ ଉପମନ୍ତ୍ରୀ । ସେତେବେଳେ ମା'କୁ କହିବି—କଟକ ଯାଣ୍ଡି, ଦେଖିଲୁ, ମୁଁ କେମିତି ମନ୍ତ୍ରୀଘର ଜ୍ୱାଇଁ ହେଲି—କହୁଥିଲି ପରା !

ମାଇପ ମୋର ପାଠୋଇ—କେତେଯାଏଁ ସେ ପଢ଼ିଯାଇଛନ୍ତି ତାର ସୀମା ନାହିଁ । ତା ସାଙ୍ଗରେ ପେଡ଼ୀ ପେଟରା ଭରି ।—ଅହଙ୍କା-ନା ପାଉ ? ସବୁଥିରେ ବହୁ କତାବ । ସେଗୁଡ଼ାକରୁ ଅମେ କ

ଖାଇବ ? ମୋ ମା ବି ମୁହଁ ମୋଡ଼ିଦେଲା । ହେଲେ ମୋ କଳିଜାରେ ଲୁଚି ରହିଗଲା ପିମିତି । ଯେତେହେଲେ ଶଶୁର ଘର । ଶଶୁରଙ୍କୁ ଅପମାନ—ସହେ କେତେବେ ।

ମଧୁଶଯ୍ୟା ଦିନ ଆମ ଘର ଅଙ୍କେ ସେ କହିଲେ—"ତମେ ମୋର ଜୀବନ, ଜୀବନର ବନ୍ଧୁ—ତମେ ମୋ ଇଜ୍ଜତ ରଖିଦେଲ ।"

କହିଲି—"କିଏ ନେଇଯାଇଥିଲା କି ?"

"ନାଇଁ—ନାଇଁ—ଏ ଯେଉଁ କୁସଂସ୍କାର ଆମ ଦେଶରେ—ଯେ ପାଠ ପଢ଼ିଲେ ଚରିତ୍ର ଖରାପ—ଏ ମନରୁ ନ ଗଲେ ଯାଏ ନାରୀ ଜାତି କେବେ ସ୍ୱାଧୀନ ହୋଇପାରିବ ନାହିଁ—ନା କଣ କହୁଛ ?"

"ନିଶ୍ଚୟ ନିଶ୍ଚୟ, ସ୍ୱାଧୀନ ତ । ଠିକ୍ ଠିକ୍—ମାନେ ଇଂରାଜୀ ଭାରତ ଛାଡ଼ ତ ? ମୁଁ ତ ପିଲା ଦିନରୁ କହିସାରିଛି ?"

"ଏଁ ? ତମେ କଣ ଇଂଲିଶ ପଢ଼ି ନ ? ମୋତେ କଣ ମୋ ଭାଇ ବାପା ଠେଲି ଦେଲେ ।"

"ନା—ନା – ମାନେ ମୁଁ ଇଂରାଜୀ ଜାଣିଛି ଯେ—ତେବେ ଭାରତ ଛାଡ଼ ଆନ୍ଦୋଳନ ପରଠୁ ଆଜି ସେ ସବୁ ମୁହଁରେ ବି ଆଣେ ନାହିଁ ।"

"ତମେ ଆନ୍ଦୋଳନରେ ଯୋଗ ଦେଇଥିଲ ?"

ଏତିକିବେଳେ ସୁବିଧା ମିଳିଲା—ମୋର ଅଭ୍ୟସ୍ତ ଇଂରାଜୀ ପଦଟି ମା ଶିଖିକି ଯାହା ନିତି ବଢାଏଁ—କହି ଦେବାକୁ—କହିଦେଲି—"ନୋ ।"

ମାଇପ ପଚାରିଲା—"ତା ହେଲେ ତମର ଇଂରାଜୀ ବିଦ୍ୱେଷ ହେଲା କାହିଁକି ? କଣ କୌଣସି ଇଂରାଜୀ ତମକୁ ଲତେଇ ଥିଲା କି ?

ଭାବିଲି—ବୋଧହୁଏ ତେଲ ଲଗେଇବା କଥା କହୁଛି—କହିଦେଲି—"ଇଏସ୍, ଇଏସ୍ ।"

ହସି ହସି ମାଇପ କହିଲା—"ତମକୁ ଭାରି ମିଠା ଲାଗିଥିବ—ନୁହେଁ ?"

କହିଲି—"ଭେରିଗୁଡ୍ !"

ତାପରେ ତାଙ୍କ ମୁହଁ ଶୁଖିଗଲା । ଆଉ ଯେତେ ଡାକିଲି ଅଦୌ ଶୁଣିଲେ ନାହିଁ, ସଢେଇ ସଢେଇ କାନ୍ଦିଲେ । ମୁଁ ବା ଆଉ କଣ କରନ୍ତି । ଯେଉଁ ତିନୋଟି ଇଂରାଜୀ ଶବ୍ଦ ଶିଖିଥିଲି, ସବୁଯାକ ତ ଖରଚ କରି ସାରିଲିଣି । ଏବେ ପାଖରେ କିଏ ଅଛି ଯେ କାହା ପାଖରୁ ଯାଇଁ ଧାର ଆଣିବ ? ନିରୁପାୟ !

ଦିନେ ଗଲା, ଦୁଇଦିନ, ତିନିଦିନ, ଚାରି, ପାଞ୍ଚ, ଛ ଦିନ—ଖିଆନାହିଁ ପିଆନାହିଁ, ତାଙ୍କର ଦିନରାତି କାନ୍ଦଣା । କହିଲି—"ତମେ ଦୁଃଖ କର ନାହିଁ – ମୁଁ ଏଣିକି ପାଠ ପଢ଼ିବି । କିନ୍ତୁ ତମେ ସକାଳୁ ଉଠି ଥରେ ଲେଖାଏଁ ମୋତେ ମନେ ପକାଇ ଦେଉଥିବ—

ଖେଳୁଆଡ଼ ବୁଦ୍ଧି ଛାଡ଼ରେ ବାବୁ,
ପାଠ ପଢ଼ିଲେ ତୁ ବାବୁ ହୋଇବୁ ।"

ଏମିତି ମୋର ପାଠ ଆରମ୍ଭ ହୋଇଛି କି ନାହିଁ—ଗଣ୍ଡି-ମା'ର ଡାଗିଦା ପଡ଼ିଲା, ବିଲକୁ ଯା । ନ ମାନି ଯିବି କ'ଣ ? ସକାଳୁ ଘଣ୍ଟେ ପାଠ ପଢ଼େ । ତାପରେ ବିଲ । ତାପରେ ଘାଠ । ନିତି ସକାଳୁ ମାଇପ କହେ—

ଖେଳୁଆଡ଼ ବୁଦ୍ଧି ଛାଡ଼ରେ ବାବୁ
ପାଠ ପଢ଼ିଲେ ତୁ ବାବୁ ହୋଇବୁ ।

ମୁଁ କହେ—ଖାଲି ପାଠ ନୁହେଁ—ବିନୋବା ଭାବେ କଣ କହିଲେଣି ଶୁଣିଛ ? ହଳ ଧରିବାକୁ ହବ—

ବୁଢ଼ାକାଳେ ପାଠ ପଢ଼ିବ
ପଡ଼ିଆ ବାଡ଼କି ଛାଡ଼ିବ ।

କିନ୍ତୁ ପଡ଼ିଆ ବାଡ଼ ଛାଡ଼ି ମାଟି କାଦୁଅ ହୋଇ ଛୋଟ ଲୋକଙ୍କ ସାଙ୍ଗରେ ମିଶି ମୁହଁଟା ମୋର ଖରାପ ହୋଇଥିଲା ବୋଲି ଶେଷରେ ଧଇତା ମାଇପ ଧକେଁ ବସ୍ତୁର କଲେଁ—ବାବୁ କଣ ଗଛି ଖାଇଲେ ହୁଅନ୍ତି—ଯିଏ ବସି ଖାଏ—ଚଉକୀ ଉପରେ ବସି ଆରାମ କରେ, ସେ ସିନା ବାବୁ ! ସେ ଖଟେ ସେ ତ ମୂଲିଆ । ସୁତରାଂ ଏ ଜମି ପ୍ରମାଣ ଥିବାଯାଏଁ—ମା ବାଲକୁ ପଠାଉଥିବ, ଅଥଚ ମୋ ବାବୁ ହେବାର ବାଟ ବନ୍ଦ ହୋଇଥିବ । ଅତଏବ ଆଗ ଜମି ଛାଡ଼ିବା ।

ସେତେବେଳେ ତ ପାଠ ପଢ଼ି ନ ଥିଲି—ଖାଲି ଶୁଣିଥିଲି ସ୍ତ୍ରୀବୁଦ୍ଧିରେ ଜଗନ୍ନାଥ ଖଣ୍ଡିଆ । କହିଲି—ହେଲା ତ ଭାସିଗଲା କଣ । ଜଗନ୍ନାଥ ପରି ଛପନ ଭୋଗ କେଉଁ ବାବୁଟା ପାଉଛନ୍ତି ? ଖଣ୍ଡିଆ ହୁଏ ପଛେ—ଗୋଟେ ବାବୁ । ମାତ୍ର ଏବେ ସିନା ପୋଥିରେ ଦେଖୁଛି ଉପଦେଶ ବାଣୀ—ନାରୀ ବୁଦ୍ଧି ପ୍ରଳୟଙ୍କରୀ ।

ସେତେବେଳେ ସଦା ମୋତେ କିଏ କହୁଥାନ୍ତା, ବାବୁ ଅର୍ଥ ପଞ୍ଜାବରେ ଗଲା; ମୁଁ କଣ କେବେ ବାବୁ ହବାକୁ ମନ କରିଥାନ୍ତି । ପୁଣି ଜାଣିଲି ଯେ ଏ ଦେଶକୁ ସାହେବ ମାନେ ନୂଆ ନୂଆ ଆସିବା ବେଳେ ବଙ୍ଗାଳୀ କିରାଣୀଙ୍କ ତେଲଚକଟା ଲୁଗାପଟା ଓ ଦେହ ଗନ୍ଧାଏ ବୋଲି—ବଦ୍ ବୁ—ଦୁର୍ଗନ୍ଧ ଶବ୍ଦରୁ ବାବୁ ହୋଇଛି । ଏ ସବୁ କଥା ଜାଣିଥିଲେ ମୁଁ କେବେ ଜମି ବିକି ବାବୁ ହେବାକୁ ମନକରି ନ ଥାନ୍ତି ।

ମାତ୍ର ଏତେ କଥା ଜାଣିଲାବେଳକୁ ଆଉ ମୋର ଫେରି ଯିବାକୁ ବାଟ ନାହିଁ । ମୁଁ ଇମି ବଡ଼ ଘଡ଼ି, ଫାଉଣ୍ଟେନପେନ, ଚଷମା କିଣିଲାବେଳକୁ ତେଣେ ଉଦର ହାଉ ହାଉ । କୌଣସି ମତେ ମାଇପ ଠାକୁରାଣୀଙ୍କୁ ଗାଁ ସ୍କୁଲ ମାଷ୍ଟରାଣୀ ପଦରେ ଶଶୁରଙ୍କ ଦୟାରୁ ଭରତି କରିଦେଇ ଏବେ କେବଳ ତାଙ୍କରି ମୁହଁରେ ମୁଁ ବାବୁହୋଇଛି । ମୋ କଥା ଯେଉଁଠି ପଡ଼େ ସେ ଜୋରଦେଇ କହନ୍ତି—ଆମ ବାବୁ ଇମିତି କଲେ—ଆମ ବାବୁ ଇମିତି କହିଲେ ।

ତା’ ଛଡ଼ା ମୋ ପୁଅଟିକୁ ବି ମୁଁ ଶିଖାଇଦେଲି —ମୋତେ ବାବା ନ ଡାକି ବାବୁ ଡାକିବୁ ।

ଏମନ୍ତ ରୂପେ ମୋ ପୁଅ ମାଇପଙ୍କ ବାବୁ ହୋଇ ରହିଗଲି । ଅଙ୍କା, କଲିକତାରେ ପୁଅ ଝିଅ ପଞ୍ଜାବୀ ପୋଷାକ ପିନ୍ଧି ପଞ୍ଜାବୀ ଭାଷାରେ ବାପକୁ ବାବୁ ବୋଲି ଡାକନ୍ତି । ଆଉ ମାଇପମାନେ, ଇଂରେଜ ଏ ବଙ୍ଗାଳୀକୁ ବାବୁ ଡାକିଲାପରି ସ୍ୱାମୀଙ୍କୁ ମଧ୍ୟ ଆମ ବାବୁ ବୋଲି କହନ୍ତି । ତେଣୁ ମୋ ପୁଅ ଓ ମାଇପଙ୍କର ମୁଁ ବାବୁ । ଅବଶ୍ୟ ଅଉ କାହାରି ନୁହେଁ ।

ଅଉ ଗୁଡ଼କର ହବାର ଉପାୟ ନାହିଁ । ଇମି ତ ବାକିରି ସରିଛି । ବାବୁ ହୋଇ ଜୀଇଁଛି—ବାବୁ ହୋଇ ମରିବି ।

# ରୋମାନ୍ସ ଓ ରୋମନ୍ଥ

[କେବଳ ହସିବା ଓ ହସାଇବା ପାଇଁ ଯେଉଁ ହାସ୍ୟରସ ସୃଷ୍ଟି ହୁଏ ତାହା ସର୍ବାପେକ୍ଷା ସ୍ୱଚ୍ଛ, ନିର୍ମଳ ଓ ଉପଭୋଗ୍ୟ । ଲେଖକ ବ୍ୟଙ୍ଗ ବିଦ୍ରୂପ ନ କରି—ଅଶ୍ଳୀଳତାକୁ ଆଶ୍ରୟ ନ କରି ଯୁବକର ଏକ ବିକୃତ ମନର ପରିଚୟ ଦେବା ସଙ୍ଗେ ସଙ୍ଗେ ନିର୍ବାହ ହସ ବାଢ଼ିଛନ୍ତି ।]

ନୂଆ ଗୋଟାଏ କିଛି କର, ନୂଆ ବାଟ ପିଟାଅ, ନୂଆ ଚିନ୍ତାକର ଇତ୍ୟାଦି କଥା ସବୁବେଳେ ନେତାମାନଙ୍କଠୁ ଶୁଣି ଶୁଣି ନେଲ୍ ଓ ମୁଁ ଠିକ୍ କଲ୍—ଅମ କଲେଜ ଟିଅଗୁଡ଼ାକ ଚିହ୍ନା, ତେଣୁ ପୁରୁଣା Old fossil—ମଡ଼ାହଡ଼ା—ଏଠି ରୋମାନ୍ସ ଅସମ୍ଭବ । ଅତଏବ ଗୋଟାଏ ନୂଆ ପ୍ରକାର ପ୍ରେମ କରିବା ବିଧେୟ ।

ଆମେ ଦୁହେଁ ଗମ୍ଭୀର ଚିନ୍ତାରେ ବସିଛୁ । ଗୋଆ ପାଇଁ ପଣ୍ଡିତ ନେହେରୁ ମଧ୍ୟ ଏମିତ ଚିନ୍ତାକର ନ ଥିବେ କିମ୍ବା ଗୁଆ ଅଞ୍ଚଳରେ ପାନ ଅମଳାଙ୍କ ପାଟି ଏମିତ ଅମ୍ବିଲା ହୋଇ ନ ଥିବ—ଆମେ ଯେମିତ ଭୁରୁକୁଣ୍ଡା ମୁହଁ କରି ବସିଥିଲୁ ସେ ଦିନ ଟେପାଲ ଉପରେ—ବ୍ରସ୍ତାକଢ଼େ । ଆମ ପୁଷ୍ପାସ୍ୱଠା ଆମର ଏ ଢଙ୍ଗ ଦେଖି କହିଲା—"ବାବୁ ଏମିତ ବସିଛନ୍ତି କାହିଁକି ? ଅବସ୍ଥାଟା ତ ଭଲ ଲାଗୁନାହିଁ । ବାପାଙ୍କ ପାଖକୁ ଲେଖି ଦିଅନ୍ତୁ, ମାର୍ଗଶୀର ତ ଆଉ ବେଶିଦିନ ନାହିଁ ।"

ନେଲୁ କହିଲା—"ନାହିଁରେ ନନା—ଆମେ ଏଣିକି ଅନାଇଛୁ—ଚଢ଼େଇ ଉଡ଼ିଯାଉଛନ୍ତି କି ସୁନ୍ଦର ।"

ପୁଷ୍ପାସ୍ୱ କହିଲା—"ବାବୁ ଏଣେ କି ଚଢ଼େଇ—ଏସବୁ ଉଡ଼ି ଶିଖି ନାହାନ୍ତି—କଲିକତା ଯାଆନ୍ତୁ—କଲିକତା ।"

ମୁଁ କହିଲି—"କଲିକତାରେ ତମେ ଥିଲ କି ?

"ଥିଲି ? ବାବୁ ଦଶ ବରଷ ବଙ୍ଗାଳୀ ବାଡ଼ିରେ ରହିଲି । ଅଧା କି ଅଗମରେ ଦିନ ନ ଯାଉଛି ।"

"ଫେରି ଆସିଲୁ କାହିଁକି ?"

"ସେ କଥା କହିବି କଣ ? ମଣିଷ ଆଉ ରହିଲା କଏ କି ? କର୍ତ୍ତା ମରିଗଲେ, ଝିଅ ତ ବାହା ହୋଇଗଲା । ପୁଅ ଗଲା, ବାପୁର ବୁଢ଼ାଟା ଖାଲି ସବୁବେଳେ ଖଟର ଖଟର—ପଳାଇ ଆସିଲି । ତଥାପି ତ ବୁଢ଼ାର ଝିଅଇଁ ଡାକୁଥିଲା—ଝିଅ କଲେଜରେ ପଢ଼େ—ରନ୍ଧାବଢ଼ା କରିପାରେ ନାହିଁ । ମୋର ବାବୁ ଆଜି ରହନ୍ତି କଏ—ଅନେକ ଦିନ କଟିଲା ।"

ପୁଷ୍ପାସ୍ୱ ଚାଲିଗଲା । ହଠାତ୍ ଗୋଟାଏ ପ୍ଲାନ ମୁଣ୍ଡରେ ପଶିଲା—ଅଢ଼େଇ ମାସିଆ ଯୋଜନା । ଅସୁଚ୍ଛି ଗ୍ରୀଷ୍ମ ଛୁଟି । ହପ୍ତାଏ

ଘଣ୍ଟେ ଅଗରୁ ଅମେ ଡାକ୍ତର ସାର୍ଟିଫିକେଟ ଦେଇ ପଳାଇଲୁ କଲକତା ।

ଟିକେ ସୁବିଧା ପାଇଲେ ବେଥୁନ୍ କଲେଜ ଗେଟରେ ଠିଆ ହେଉଁ । ଇଚ୍ଛା ଥାଏ—ଦୁହେଁ ଯାକ ପାଖ ପାଖରେ ରହିବା—ଯେମିତ ସେଇଠାର ଅଭିଜ୍ଞତା ପରସ୍ପର ବଖାଣିବାକୁ ସୁବିଧା ମିଳେ । ଯୋଡ଼ଯାଆଁଳ ହୋଇଥିବେ, ସୁନ୍ଦରୀ ହୋଇଥିବେ ପୁଣି ଏକା ଘରର ନ ହୋଇଥିବେ ଏବଂ ପଡ଼ୋଶୀ ହୋଇଥିବେ, ଫେସନ ହୋଇଥିବେ । ଏମିତ ବୁଲ୍ ବୁଲ୍ ମିଳିବାକୁ ଲାଗିଲେ ୪ ଦିନ । ତାଙ୍କ କଲେଜ ବନ୍ଦହେବା ଦିନ ମା ଗଙ୍ଗାକାଳୀଙ୍କି ଭୋଗ ମନାସି ଗଲୁ ।

ଛୁଟି ହେବା ପରେ ପଡ଼ିଗଲେ ନେତ୍ର ପଥରେ ବାଙ୍କଚୁଲଅଣୀ ଥରେ ଯୋଡ଼ଏ ଟୋକୀ । ପିଛା ଧରିଲୁଁ । ଗୋଟିଏ ରାସ୍ତାର ସାମନା ସାମନି ଯୋଡ଼ଏ ଘର । ଝିଅ ଦୁହେଁ ଭିତରକୁ ପଶିଗଲା ପରେ ଅମେ ବାଣ୍ଟି ହୋଇଗଲୁ । ଦଣ୍ଡେ ଛାଡ଼ି ଦେଇ ଦୁଆରେ ଯାଇଁ ଠକ୍ ଠକ୍ ଠକ୍ ଠକ୍ । ଜାମା ଲୁଗାକୁ ଖୁବ ସିଲେଇ ଭଳି—ମଇଳା ଗୋଳେଇ ପୁରାପୂରି ଓଡ଼ିଆ ବାହ୍ମଣ ବା ଠାକୁର ବନିଯାଇ ଥାଉ । ନେଲୁ ପାଇଁ ହେଲେ ପଇତା ବି କିଣିବାକୁ ପଡ଼ିଥିଲା ।

"ଅପନାର ବାମୁନ ଠାକୁର ଦରକାର ଅଛେ ?" ଆଃ ଏକାଥରକେ ଗୁଳିଯାଇ ବସିଗଲା ଶଢ଼ଆ ବୁକୁରେ ।

"ହାଁ ଦରକାର ।"

ସଙ୍ଗେ ସଙ୍ଗେ ମୁକରର—ନେଲୁର ବି, ମୋର ବି । ଦୁହେଁ ଯାକ ଅଚିରେ ଦୁଇ ଦିଦିମଣିଙ୍କର ପ୍ରିୟପାତ୍ର ହୋଇଗଲୁ । କାରଣ ଯତ୍ନଟା ଆମର ତାଙ୍କ ଉପରେ ବେଶି । ମାଛ ମୁଣ୍ଡ ଓ ଚିଙ୍ଗୁଡ଼ି ଭଜା ଖିଆଁଣି ଥାଳିରେ ଦିଅନ୍ତୁ । ନିବାଢ଼ା ଛଡ଼ା, ବେଲ

ପାଇଲେ ଆମେ ଯାଇଁ ତାଙ୍କ ପଢ଼ାଘରର ବସ୍ତ୍ରପତ୍ର ସଜାଇ ଦେଇ ଆସୁଁ । ନେଲ୍‌କୁ କହୁଥାଏଁ—ଆଜେ ଭୁଲରେ ବି କେବେ ମୁହଁରୁ ଇଂରାଜୀ କାଢ଼ିବୁ ନାହିଁ କିମ୍ବା ଇଂରାଜ ବୁଢ଼ୀଲପରି ଉତ୍ତର ଦେବୁନାହିଁ । ବଡ଼ ସାବଧାନରେ ଥାଉଁ । ନାଁ ଗାଁ ବଦଳାଇ ଦେଇଥାଉଁ ବେଠିକଣା କରି ।

ସଞ୍ଜହେଲେ ପଲେ ଟୋକା ଏ ଘରକୁ ଆସନ୍ତି ଓ ପଲେ ଯାଆନ୍ତି ସେ ଘରକୁ । ଆଜ ଘନ ଘନ ଚା ବିସ୍କୁଟ ପାଇଁ ମୋତେ ଡକରା ପଡ଼େ । ଦେଖିଲି ଚଢ଼େଇ ଅନେକ । ମନଟା ଫିକା ପଡ଼ିଲା । ରୋମାନ୍ସ କରିବା ବଦଳରେ ମନେ ହେଲା ଚାଲିଛି ରୋମନ୍ଥନ । ଏକୁ ଆରେକ ସୁନ୍ଦର । କାହାକୁ ଆପଣାର କରିବି—ପଡ଼ିଲା ଚିନ୍ତା । ସମସ୍ତେ ମୋତେ ଆଖେଇଲେ, ବକ୍‌ସିସ୍‌ର ମାତ୍ରାଟା ବି ବଢ଼ିଲା । ଭଲ ଲୁଗାପଟା କଲି । ନେଲ୍‌ର ଅବସ୍ଥା ଠିକ୍ ସେଇଆ । ଫଳରେ ଘରର ଦଦମଳମାନେ ଆମ ଉପରେ କଡ଼ା ଆଖି କଲେ ।

ଦିନକର ଘଟଣା । ଦଦମଳକୁ ଯେତେଦୂର ପାରେ—ସେତେ ଯତ୍ନ କରି ମଧ୍ୟ ନାରୀସୁଲଭ ଈର୍ଷା ଅଜ ଦୂର କରାଇ ପାରିଲି ନାହିଁ । ମନେ ମନେ ଭାବୁଥାଏଁ—ମୋର ଯେପରି ସ୍ପୃହା ଜମିଗଲାଣି । ସ୍ତ୍ରୀଲୋକଗୁଡ଼ାକ ସବୁ ସମାନ । ଏଥର ଘରକୁ ଯିବାକୁ ଇଚ୍ଛା ହେଉଥାଏ । ମାତ୍ର ଦଦମଳର ବାରଗଟା ବଡ଼ ବାଧୁଥାଏ ।

ସେଦିନ ପଲେ ଟୋକା ଅସି ଅର୍ଥନୀତି ଚର୍ଚ୍ଚାକଲେ—Law of diminishing return କ୍ରମକ୍ଷୟମାନ ମୂଲ୍ୟବୋଧଟା କଣ ବୋଲି ପରସ୍ପର ପଚରାପଚରି ହେଉଛନ୍ତି । କେହି ବୁଝାଇ ପାରୁନାହାନ୍ତି । ମୁଁ ଚାହା ଟ୍ରେ ଥୋଇ ଦେଇ ଠିକ୍ ବୁଝାଇଦେଲି ।

ସମସ୍ତେ ସ୍ତ୍ରୀହାର ଭୂରି ଭୂରି ପ୍ରଶଂସା କଲେ । ମୁଁ କହିଲି—
"ଆଜ୍ଞେ, ଆମି କି ସ୍ତ୍ରୀ କରଛେ ଜାନ—ଆପନାର ଭାଲ ବାସେନ୍ ବଲେ ଆମାର ସ୍ତ୍ରୀ ଆପନାଦେର ଭାଲ ଲାଗେ ।"

ସମସ୍ତେ ମୁରକି ହସି କହିଲେ—

"ଠିକ୍ ଠିକ୍ ବଲେଛେ ଠାକୁର । ତୁମି ତାକେ ବେଶି ଭାଲ ବାସ ।" ଜଣେ କହିଲା—ଅଚ୍ଛା ବଲ୍‌ତୋ ଠାକୁର । ତାପରେ ସୁଯୋଗ ପାଇ କହିଲି – "ଅଚ୍ଛା ଏକଟା କଥା, ଦାଦାମଣିକେ ବେଶି ଭାଲବାସତାମ୍—କିନ୍ତୁ ।"

"କିନ୍ତୁ କେନ ?" ଜଣେ ପଚାରିଲା ।

ମୁଁ କହିଲି "ଆଜ୍ଞେ—ଆପନାର ସକଲେ ଭାଲବାସ୍‌ଲେ— ତାଇ ହୟ—"

"ତା କେନ ହବେ—" ଆଉ ଜଣେ ପଚାରିଲା ।

ହଠାତ୍ ମୋ ମୁହଁରୁ ବାହାରିପଡ଼ିଲା—Law of diminishing return ।

ମୋର ହଠାତ୍ ମନେ ପଡ଼ିଗଲା—ମୁଁ ଇଂରାଜୀ କହି ପକାଇଛି । ଯୋତା ବାହାରିବା ପୂର୍ବରୁ ଗୋଟାଏ ଉଆଁ ଦେଇ ବାହାରକୁ ଅସି ଦେଖେ ନେଲିର ମଧ୍ୟ ସେଇ ଅବସ୍ଥା । କହିଲି— ତୁ ଥା ଭାଇ ମୁଁ ଗଲି । ପୁଲିସ, ପୁଲିସ—ହେଇଟି ପୁଲିସ ଆସିବ ।

ବେଣି ଜଣେ ପଡ଼ୁଛି ସମଦଶା—କହି ଷ୍ଟେସନକୁ ଗ୍ଲଲିଲି ।

ନେଲି ତାର ଅଭିଜ୍ଞତା କହିଲା—

ତା ଦାଦାମଣି ବଟାଣି ବା ଜଣ୍ଡିଦ ବଦ୍ୟାରେ ବାଙ୍ଗାଳ ପଡ଼େ । ବାଙ୍ଗାଳ ସ୍ତ୍ରୀମାନଙ୍କ ବଡ଼ ଦୁଃଖ । ମାଇକିନିଆ ବାଙ୍ଗାଳ ଗୋଟେ କାଣ୍ଡ ଘଟିବେ ।

କିନ୍ତୁ ଠିକ୍ ମୋର ଅବସ୍ଥା ହେଲା ନେଲିର, ଅନ୍ୟ ଟୋକା ଗୁଡ଼ିକ ବେଶି ପଡ଼ିଲେ ତା ପ୍ରେମରେ । ନେଲି ସ୍ପୋର୍ଟସ୍‌ମ୍ୟାନ୍, ସୁନ୍ଦର । ଫଳରେ ତା' ଦାଦାମଣି ତାକୁ ସ୍ୱଭାବତ ଈର୍ଷା କଲା । ସେ କିନ୍ତୁ ଅନ୍ୟ କାହାର ପ୍ରେମକୁ ରେସ୍‌ପଣ୍ଡ କରେ ନାହିଁ । ତଥାପି ଦୋଷ ହେଲା ତାର । ସବୁବେଳେ ଦାଦାମଣି ତାର ଗୁମାନମା ।

ସେଦିନ ସଞ୍ଜରେ ଆଲୋଚନା ହିଅ ଟିଅଙ୍କ ଭିତରେ—Who is to survive in the earth—animals or plant ? Survival of the fittest—ମାନେରେ ଡ୍ରଂସ୍ର—ଙ୍କୁ ପ୍ରେୟଲ, ନିଷ୍ଠୁର ବଞ୍ଚିବ ନା—ସମ୍ପୂର୍ଣ୍ଣ ନିରୀହ ଗଛପତ୍ର, ବଞ୍ଚି ରହିବ ?

କେହି ଉତ୍ତର ଦେଇ ନପାରି ପଳାଇଲେ । ସେଦିନ ରାତିରେ ଠିକ୍ ସେଇ ପ୍ରଶ୍ନର ଉତ୍ତର ନେଲି ଦାଦାମଣି ଖାତାରେ ଲେଖି ଦେଲା—Animal will survive not because it is more suitable to earth but because it responds and reacts more than the plant, ଅର୍ଥାତ୍ ପଶୁ ପୃଥିବୀ ପକ୍ଷରେ ଅଧିକ ଉପଯୁକ୍ତ, ଯେ ହେତୁ ତାର ପ୍ରତିକ୍ରିୟା ଓ ପ୍ରତି-ଦାନର କ୍ଷମତା ବେଶି ।

ଦାଦାମଣି ହଠାତ୍ ତାକୁ ପଚାରି ନେଲିକୁ ଡାକିଲା—କେ ଲେଖେଛେ ?

"ଆମି କି ଜାନି ?"

"ତୋମାକେ ଫୁଲସେ ଦିବ ?"

ନେଲି କହିଲା—"ଦାଦାମଣି—ଆମି ଆପନାକେ ଏତୋଦିନ ଧରେ ଭାଲ ବେସେ ଏସେଛି—ଆପନାର ଦେଖିଛି କୋନୋ

ରେସପନ୍ସ ନେଇ, ଭୋନୋ ରିଅକସନ ନାହିଁ—ଅପଣା ଏକଟା ପ୍ଲାଣ୍ଟ—ଅପଣା ଅନ୍ନାମେଲ୍ ହେଲେ ଭଲ ହଏ ।

ହଠାତ୍ ଘରର କର୍ତ୍ତା ଅସି ପହଞ୍ଚିଗଲେ । "କା ବଲ୍ଲ୍‌ଲରେ ବେଠା ?" ବୋଲି ଠେଙ୍ଗାଟାଏ ଉଠାଇ ଚୁଲିସ ପୁଲିସ ଚିତ୍କାର କରିଛନ୍ତି କି ନେଲ୍ସ ଅସି ରାସ୍ତାରେ ।

ଦୁହେଁ ଯାଇ ରୋମାନ୍ସ ହେମନ୍ତନ ନବ କଟେକ ଫେର ଅସିଛୁ ସେଇଦିନ । ଦେଢ଼ମାସିଆ ଯୋଜନା ସରକାରଙ୍କ ପାଞ୍ଚବର୍ଷିଆ ପର ପଫେଲ ଫେଲଡ଼୍ରୁ ଫେଲ୍ଃ

# ଉତ୍କଳ ଗର୍ଦ୍ଦଭ

ବ୍ରିଟିଶ ଅମଳ ପରେ ଉପାଧି ବ୍ୟାଧିଟା କିପରି ଅନ୍ୟ ପ୍ରକାରରେ ସଞ୍ଚାର କରିଛି ଦେଶରେ ତାର ଗୋଟିଏ ନମୁନା ଏହି କ୍ଷୁଦ୍ର ହାସ୍ୟରସାତ୍ମକ ଗଳ୍ପ ।

ଆମ ଗାଁର ହରିଆ, ହରିଶ୍ଚନ୍ଦ୍ର, ଶ୍ରୀ ହରିଶ୍ଚନ୍ଦ୍ର, ରାଉତ କିପରି ଚକ୍ରବୃଦ୍ଧି ସୁଧ ହାରରେ ଉତ୍କଳ ଗର୍ଦ୍ଦଭ ଶ୍ରୀ ହରିଶ୍ଚନ୍ଦ୍ର, ରାଉତରାୟ ମହାପାତ୍ର ଚୂଡ଼ାମଣି ହେଲେ ତା'ର ଗୋଟିଏ ସୁନ୍ଦର ଆଖ୍ୟାୟିକା ଅଛି ସେ ଆଖ୍ୟାୟିକାଟି ଶୁଣନ୍ତୁ—

ଶ୍ରୀପଞ୍ଚମୀରେ ଗାଡ଼ିଆ ଭିତରେ ନଡ଼ିଆ, ଫୁଲ, ଗୁଆ, ପଇସା ଲଡ଼ୁ ଘାସ ଆଦି ପୋତା ହୋଇଥାଏ । ଆମେ ସମସ୍ତେ ଖୋଜୁଁ । ମୁଁ ତିନିବର୍ଷ ଗାଁ ଗୁହାଳରେ ପଢ଼ିଲି—ତିନିବର୍ଷ ସାରା ସେ ବେତ ପାଇଥିଲି । ସେଥିପାଇଁ ତାଙ୍କୁ ମାଷ୍ଟ୍ରେ ଗଧ ବୋଲି ଡାକନ୍ତି ।

କିନ୍ତୁ ସେତେବେଳେ ସେ ତାଙ୍କୁ ଚେଷ୍ଟ ଉତ୍କଳଗର୍ଦ୍ଦଭ ଉପାଧି ଦେଇଥିଲେ ତା ନୁହେଁ । ମାଷ୍ଟ୍ରେ ତାଙ୍କୁ କାଗେଲ ଗର୍ଦ୍ଦଭ ବୋଲି ଡାକନ୍ତି । ସେ ଧନେ ପଚ୍ଛରିଲା, ମାଷ୍ଟ୍ରେ ଗର୍ଦ୍ଦଭ ମାନେ କଣ ?

ମାଷ୍ଟ୍ରେ କହିଲେ -ଯିଏ ସମସ୍ତଙ୍କୁ ଗଧ ବନେଇ ଛାଡିଦିଏ ତାକୁ କହନ୍ତି ଗର୍ଦ୍ଦଭ । ସେ ଦିନ ହରିଅ ମଜା ଖୁସିଠାଏ ହୋଇଗଲା ଏବଂ ତା ଗାଡାରେ କହୁରେ, କାନ୍ଥରେ, ବାଡ଼ରେ ଲୁହଅଡ଼େ ଗାରେଇ ବସିଲା—ଶ୍ରୀ ଗର୍ଦ୍ଦଭ ହରିଶ୍ଚନ୍ଦ୍ର, ସଜନ ।

କିନ୍ତୁ ହରିଅଙ୍କୁ ସଦା ହରିଶ୍ଚନ୍ଦ୍ର ସଜନ ଦେଖିବା କଥାଏ— ସେ ହେଉଛି ତାର ଧୈର୍ଯ୍ୟ । ପ୍ରତି ଶ୍ରେଣୀରେ ସେ ତିନି ଚାରି ବର୍ଷ ଲେଖାଏଁ ରହି ଶେଷକୁ କୌଣସି ମତେ ମେଟ୍ରିକ ସେକେଣ୍ଡ କ୍ଲାସ ଯାଏ ଉଠି ଅଖର ଗାନ୍ଧି ଗୋଲକେ ଲେଲେଣ୍ଟର ହୋଇ ଗ୍ଳଲିଗଲା । ସମସ୍ତେ ବାହାବା କଲେ । ଜେଲରୁ ଫେରିଲାବେଳକୁ ଇଷ୍ଟୁଆରରେ ଅଣି ଗାଁ ବାଲା ବେକରେ ଫୁଲମାଳା ଦେଇଥିଲେ ।

ଥରେ ଆମ ଗାଁକୁ ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ ଆସିଥିଲେ । ତାଙ୍କ ସାଙ୍ଗରେ ଆଉ ଦଳେ ଖଦଡ଼ିଆ ଆସିଥାନ୍ତି । ଭାରି ବଡ଼ ସଭା ହେଲା । ବହୁତ ଫୁଲମାଳ—ଗୁହ ଗୁହଠା ଖାସି—ପୋଖରୀଏ ମାଛର ଆୟୋଜନ ହୋଇଥିଲା । ଆମ ଗାଁ ପ୍ରାଇମେରୀ ସ୍କୁଲ ଶିକ୍ଷକ ଥିଲେ କାରପରଦାର । ହରିଆ ହେଲା ସେକ୍ରେଟେରୀ । ଅଜ ଦିବ୍ୟସିଂହ ଦେବବର୍ତ୍ତୀ ହେଲେ ପ୍ରେସିଡେଣ୍ଟ, ସ୍ୱାଗତ ସମିତି । ଦିବ୍ୟସିଂହ ପଢ଼ାଶୁଣା ଲୋକ ବୋଲି ଆମ ଗାଁ ତରଫରୁ ସମସ୍ତେ ତାଙ୍କୁ ସମ୍ମାନରେ ପଠାନ୍ତି । ଭଲ ମନ୍ଦ ଜିନିଷ ଶସ୍ତାରେ କିଣିଅଣିବାକୁ ଶସ୍ତାରେ ମାଲମକଦ୍ଦମା ଚଳାଇବା ଓ ଶସ୍ତାରେ କଣ୍ଟ୍ରୋଲ ଦ୍ରବ୍ୟ ଅଣିବା ଯାଏ ସବୁ କାମରେ ସମସ୍ତେ ଦେବବର୍ତ୍ତୀଙ୍କ ସାହାଯ୍ୟ ନିଅନ୍ତି । ଦେଶ ସ୍ୱାଧୀନ ହେବା ପରଠାରୁ

ବେବର୍ତ୍ତା ଝାଡ଼ା ପିନ୍ଧି ଶିଖିଲେଣି । ସେ ବର୍ଷ ସେ ଜିଲାବୋର୍ଡ଼ ସଭ୍ୟ ହେଲେ—ତାଙ୍କୁ ଆଶା ଦିଆଯାଉଛି—ଆସନ୍ତା ଥରକୁ ଲାଟ ସଭା ସଭ୍ୟ କରି ଦିଆଯିବ ।

ହରିଆ ହେଉଛନ୍ତି ବେବର୍ତ୍ତାଙ୍କ ଶଳା ।

ମହତାବ ବାହାରିଯିବା ପରଦିନ ସେ ଆସି ମୋତେ କହିଲା—ହଇରେ ଭାଇ, ଏ ମହତାବଙ୍କ ସାଙ୍ଗରେ ମୁଁ ବି ଜେଲ ଯାଇଥିଲି । ସେତେବେଳେ ସେ ଶ୍ରୀ ହରେକୃଷ୍ଣ ମହତାବ ଥିଲେ, ବର୍ତ୍ତମାନ ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ କିପରି ହେଲେ ? କ'ଣ ସେ ଆଗରୁ ଜଗନ୍ନାଥ ମହତାବଙ୍କ ପୁଅ ଥିଲେ ଏବେ ମରି ପୁଣି ଥରେ ଉତ୍କଳକେଶରୀ ଡକ୍ଟର ମହତାବଙ୍କ ପୁଅ ହେଲେ ?

ମୁଁ କହିଲି—ମୁଁ ତ ମହତାବଙ୍କ ପିତାଙ୍କ ନାମ ଜାଣେ ନାଁ—କିମ୍ବା ତାଙ୍କ ପିତା ଦାସ କି ମହତାବ ତା' କହିପାରିବି ନାହିଁ—ମାତ୍ର ଉତ୍କଳକେଶରୀ ତାଙ୍କୁ ଶ୍ରଦ୍ଧାରେ ଆମ ଦେଶ ଡାକେ । ଆଉ ଗୋଟାଏ ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟର ଉପାଧି ଦେଇଛନ୍ତି ।

ମାତ୍ର ମୋ କଥାରେ ହରିଆ ବିଶ୍ୱାସ କଲା ନାହିଁ । ମୁଁ ଦେଖିଲି ହରିଆକୁ ବେଶ୍ ଗୋଟିଏ ଗର୍ଦ୍ଦଭ ସଜେଇ ଦେଇ ହବ । ମଜାଟା ମାରିବା ପାଇଁ ମନେ ମନେ ଗୋଟାଏ ମସ୍ତବଡ଼ ଫିକର ଠିକ୍ କରି ଠୋ ଠୋ କରି ହସି ପକାଇଲି ।

ହରିଆ ପଚାରିଲା—ହସିଲେ ?

ମୁଁ କହିଲି—ତୁ'ଟା ବୋକା ନୁହଁ ? ଏଇଥିରେ ବିଶ୍ୱାସ କରିଗଲୁ, ଅରେ ଶ୍ରଦ୍ଧାରେ କ'ଣ ଲୋକେ ବାଘ, ସିଂହ, କେଶରୀ ଏମିତି ନାମ ଦିଅନ୍ତି ?

ହରିଆ ମହା ଭାବନାରେ ପଡ଼ିଗଲା । ବହୁତଗୁଡ଼ାଏ ବସି ଚିନ୍ତା କରି କରି କହିଲା—ଅଚ୍ଛା ଆମ ଗାଁର କଣାମଣିଆ ନାଁ କାହିଁକି ପଦ୍ମଲୋଚନ କହିଲୁ ? ଅମେ ଯଦି ପଦିଆ ବୋଲି ଡାକିଦେବୁ ତ ସେ ରାଗି ପୁଅକୁ, ତା' ମା ଖାଁକରି ଗୋଡ଼େଇ ଆସିବ !

ମୋତେ ଏଥର ଗୋଟାଏ ସୂତ୍ର ମିଳିଗଲା ହରିଆକୁ ବୋଧ ସଜାଇବାକୁ । ହରିଆର ବୟସ ହେଲାଣି । ସେ ଦେର୍ଭର ଅର୍ଥ ଜାଣିଲାଣି । ପିଲାଦିନେ ମାଷ୍ଟ୍ରେ ଯେଉଁ ଅର୍ଥ କହୁଥିଲେ ସେ କଥା ସେ ଭୁଲିଯିବଣି ହୁଏତ ।

ମୁଁ କହିଲି—ଅରେ, ମୁଁ ସେଇଥିପାଇଁ ହସୁଥିଲି । ତୁ'ଟା ଏଡ଼େ ସରଳ ବିଶ୍ୱାସୀ ? ତୋତେ ଯିଏ ଯାହା କହିଦେବ ତୁ ସେଥିରେ ବିଶ୍ୱାସ କରିଯାଉଛୁ ? ତୋତେ ତ ଦେଖୁଛି ସମସ୍ତେ ଠକିଦେବେ—ଯେଉଁଟିପାରେ ସେଇଠି । ଅରେ ବୋକା, ଘରଧାରେ ସବୁ କଣାପୁଅ ନାମ ପଦ୍ମଲୋଚନଇ ଦିଅନ୍ତି । ଯିଏ ଯାହାକୁ ଭଲପାଏ ସେ ତା' ଖରାପ କଥାଟାକୁ ଲୁଚାଇବାକୁ ଚେଷ୍ଟା କରେ । ସେଥିପାଇଁ କଣା ପଣିଆକୁ ତା ମା ପଦ୍ମଲୋଚନ କହେ । ଆମ ଓଡ଼ିଆ ପୁଏ ମହତାବଗତପ୍ରାଣ । ତାଙ୍କୁ କ୍ୱମିତ ଲକ୍ଷେ ପଦ୍ମଫୁଲରେ ପୂଜା କଲେ ଦେଖିଲୁ ନାହିଁ ? କିନ୍ତୁ ଷଢେଇକଲା ଖରସୁଆଁ ଯେତେବେଳେ ବିହାର କେଶରୀ ଶ୍ରୀକୃଷ୍ଣ ସେବାକୁ ମାରିନେଇଗଲେ ସେତେବେଳେ ମହତାବଙ୍କୁ ବିହାରୀମାନେ କହିଲେ ଜଙ୍ଗଲ୍‌ଙ୍କା ଲୋମଡ଼ୀ—ମାନେ ଶିଆଳ । ମାତ୍ର ଆମ ଓଡ଼ିଆ ପୁଏ ଏ କଥାକୁ ସହ୍ୟ କରି ନପାରି କଣା ପୁଅକୁ ପଦ୍ମଲୋଚନ କହିଲାଭଳି ମହତାବଙ୍କୁ ଉତ୍କଳକେଶରୀ ନାମ

ଦେଲେ । ସେ ପାଖରେ ବାଘାବଦେଇଶଘ ତ ଏପାଖରେ ଜଙ୍ଗଲଦେଇଶଘ ।

ପୁଣି କିଛି ସମୟ ନେତାଙ୍କଭଳି ଦାନ୍ତରେ ନଖ ଖୁଣ୍ଟି ଖୁଣ୍ଟି ଚିନ୍ତାକରି କହିଲି — ଅଚ୍ଛା ମୋର ଏତେ ସୁନ୍ଦର ନାମ ହରିଶ୍ଚନ୍ଦ୍ର । ମାତ୍ର ହରିଆ ହଠାତ୍ ଡାକନ୍ତି କାହିଁ ? ମୁଁ କ'ଣ ଚୋର ନା ଡାକୁ ? କାହାରି ଘରୁ କ'ଣ ଚୋରେଇ ନେଇଥିଲି ନା କାହା ଝିଅ ବୋହୂକୁ ହରଣ କରିଥିଲି ?

ହରିଆର ମୁହଁ ରାଗରେ ଲାଲ୍ ହୋଇ ଉଠିଲା । ମୁଁ କହିଲି— ଅରେ ଗରଧାର ସେ ତ ଗୋଟାଏ ଓଲଟା ବାହାର । କୁଝିଆ ମୋଟାମୋଟି ହୋଇଥିଲେ କେହି ସେବେ ଖୁଣ୍ଟିଦିଏ—ଅହା ସୁନ୍ଦର ସୁସ୍ଥ ପିଲାଟିଏ ବୋଲି, ଫଟେ ସଂଗେ ମା ବାପ ନେଣ୍ଡୁଏ ଲେଖାଏଁ ଛେପ ପକାଇ ଦିଅନ୍ତି । ସେମିତି କେଉଁଠି ଦା ସିଂହ ନାମ ଯଦି କାହାର ହୋଇଥାଏ ତାକୁ ବାଲୁଆ ବା ଗଧ ବୋଲି ଡାକିଲେ କେହି ଅଖି ପକାଇବେ ନାହିଁ । ଏଥିପାଇଁ ଗନ୍ଧର୍ବ ଗନ୍ଧିଆ, ଗୋବର୍ଦ୍ଧନ, ଗୋବରା, ନୀଳ ନାଳୁଆ ହୋଇଯାନ୍ତି ।

ଏଥର ହରିଅକୁ ଦେଖିଲି ମୋ ଖାବୁଚକୁ ଅସିଲା । କହିଲା—ତା'ହେଲେ ମୋ ନାଁଟାକୁ ଅଉ କିଛି ରକମ ଖରାପ କରିଦେଲେ ତ ମୁଁ ବି ବଡ଼ ହୋଇଯିବି ?

ମୁଁ କହିଲି—ନିଶ୍ଚୟ ନିଶ୍ଚୟ ! ଏଇ ତୁ ଯେମିତି ଜେଲ୍ ଯାଇ ବାଘପରି ବ୍ରିଟିଶ ସଂଗରେ ଲଢ଼ି ଅସିଛୁ—ସେଥିପାଇଁ କେହି କେହି ତୋତେ କହୁଥାନ୍ତି—ଏହା ଗୋଟାଏ ଜଙ୍ଗଲ ଶାର୍ଦ୍ଦୁଳ । ମାତ୍ର ଏ ଡାକହାକ ତୋର ପତନ ହୋଇଗଲା ! ତୋତେ ସମସ୍ତେ ଖୁଣ୍ଟି ପକାଇଲେ । ତେଣୁ ଲୋକବୋର୍ଡ଼ ସଭ୍ୟଟିଏ ମଧ୍ୟ ହୋଇ ପାରିଲୁ ନାହିଁ । ତୁ ଶୀଘ୍ର କହାନ ଏଇ ଜଙ୍ଗଲ

ଶାର୍ଦ୍ଦୁଳ ନାମକୁ ଜଙ୍ଗଲଗର୍ଦ୍ଦଭରେ ପରିଣତ କରିବାକୁ ଚେଷ୍ଟା-କଲେ ଦେଖିବୁ ତୁ ଦିନେ ନିଶ୍ଚୟ ନିଶ୍ଚୟ ଅନ୍ତତଃ ଓଡ଼ିଶାର ପ୍ରଧାନ ମନ୍ତ୍ରୀଟିଏ ହୋଇ ପାରିବୁ ।

ମୋ କଥା ହରିଅର ମନକୁ ପାଇଗଲା । ତାପରେ ବନ୍ଧୁ ଭାବଚନ୍ଦ୍ର କହିଲା—ଅଚ୍ଛା ଜଙ୍ଗଲ କେଶରୀ ନହେଲି ଜଙ୍ଗଲ ଗର୍ଦ୍ଦଭ ଜାଣି ହେଲି—କିନ୍ତୁ ଡାକ୍ତର ଉପାଧି କିମିତି ପାଇବି ? ବିଶ୍ୱ-ବିଦ୍ୟାଳୟ ତ ଡକ୍ଟର ଉପାଧି ଦେବେ ନାହିଁ ।

ମୁଁ କହିଲି ଆରେ ଡାକ୍ତର ହେବାଟା ତ ଅତି ସହଜ କଥା । ଗୋଟାଏ ହୋମିଓପାଥିକ ଉପାଧି କିଣି ଆଣିଲେ ହେଲା । ଝଟକରେ ହୋମିଓପାଥିକ୍ କଲେଜକୁ ଲେଖିଦେବା ।

ହରିଅ କହିଲା—ଆରେ ବିଶ୍ୱବିଦ୍ୟାଳୟ ଉପାଧି ଆଉ ହୋମିଓପାଥି ଉପାଧି ?

ମୁଁ କହିଲି—ଆବେ କିଏ କଣ ପଚ୍ଛୁରି ବୁଝୁଛୁ, ତୁ ବିଶ୍ୱବିଦ୍ୟାଳୟରୁ ଅନରେରି କସା ପାଇଛୁ, କିମ୍ବା ଥିସିସ୍ ଲେଖି ଡକ୍ଟରେଟ ପାଇଛୁ କିମ୍ବା ହୋମିଓପାଥିର କଲେଜକୁ ପଇସା ଦେଇ ଡାକ୍ତର ହୋଇଛୁ ? ସମସ୍ତେ ଡାକ୍ତର ଡାକ୍ତର ଡାକିଲେ ହେଲା । ଏଇ ମନେକର ଅନରେରୀ ଡକ୍ଟର ଉପାଧି ବିଶ୍ୱବିଦ୍ୟାଳୟ ଦେଲା, ସେଟା ନିଜ ନାମ ପୂର୍ବରେ ବ୍ୟବହାର ନ କରିବା ହେଉଛି ସୌଜନ୍ୟ । ମାତ୍ର ତା ସତ୍ତ୍ୱେ ନିର୍ଲଜ୍ଜ ଲୋକେ ଥାଆନ୍ତି କାନ୍ଥ ବାଡ଼ କାଗଜପତ୍ର ସବୁଥିରେ ଡାକ୍ତର ଡାଃ ଡାଃ ଡାଃ ବୋଲି ଲେଖି ବିଜ୍ଞାପନ ଦିଅନ୍ତି ତ ?

କଥା ଶୁଣି ହରିଅ କହିଲା—ହଁ ହୋ—ଟଙ୍କା ଦେଇ ବିଶ୍ୱବିଦ୍ୟାଳୟଠୁଁ ଡକ୍ଟର ଉପାଧି ପାଇବାଠାରୁ ହୋମିଓପାଥି କଲେଜକୁ ଟଙ୍କା ଦେଇ ଡାକ୍ତର ହେବା ବରଂ ଭଲ । ତଫାତ୍—

ଏଠି ପଚିଶ—ସେଠି ପଚିଶ ହଜାର । ଦୁଇ ପଇସା ରୋଜଗାର କଲେ ବି ରୋଜଗାର । ଏମିତି ଅଚଳ ଟଙ୍କାଟା ଗଳିବ ହୋମିଓପାଥ୍‌ର ପେଟକୁ ଯିବ ।

ମୁଁ ଦେଖିଲି ହରିଆ ପଶି ମୋ ଖାବୁଚ ଭିତରେ । କହିଲି—ଆରେ ଆଜିରେ ଟଙ୍କା ପଚିଶଟା କାଟିକି ପଠେଇଦେ ।

ହରିଆ କହିଲା—ଟିକିଏ କମ୍ ସମରେ ହବ ନାହିଁ ?

ମୁଁ କହିଲି—ଦେ—ପଚିଶଟା ଟଙ୍କା ପଛା—ମୁଁ କାଟିକି ଯାଉଛି ଏକାଥରେ ସାର୍ଟିଫିକେଟଟାଏ ଆଣିଦେବି ।

ହରି କହିଲା—ଖାଲି ଡାକ୍ତରଟା କରିଦେଲେ ହବ ? ମୋର ଉତ୍କଳ ଗର୍ଦ୍ଦଭ ଉପାଧିଟା କିମିତି ଶ୍ରଦ୍ଧାରେ ଲୋକେ ମୋତେ ଦେବେ ତାର ବ୍ୟବସ୍ଥା ନକଲେ ମୁଁ କଣ ତମକୁ ଛାଡ଼ୁଛି ।

ମୁଁ କହିଲି ଆରେ ଭାଇ ସେଠା ତ ଆହୁରି ସହଜ । ମୁଁ କଟକରୁ ଫେରିବା ପୂର୍ବରୁ ତୋର ସେ ନାମଟା ପ୍ରଚୁର ହୋଇ ଯାଇଥିବ ।

ଅତି ଆଗ୍ରହରେ ଫୁସଫୁସ କରି ପଚାରିଲା—କିମିତି କିମିତି କହିଲୁ !

ମୁଁ କହିଲି—ଆରେ ତୁ ଆଜିଠୁ ବାହାବସା ଧରୁ—ଯାହାକୁ ଦେଖିବୁ କହିବୁ—"ହେ ଭାଇ ଦେଖୁଛ, ମୋତେ ସମସ୍ତେ ଉତ୍କଳ ଗର୍ଦ୍ଦଭ ବୋଲି ଶ୍ରଦ୍ଧାରେ ଡାକୁଛନ୍ତି । ମୁଁ ଦେଶ ପାଇଁ କଣ ବା କରିଛି ? ଏମିତି ଜେଲ୍ ତ ସମସ୍ତେ ଯାଇଛନ୍ତି । ସ୍ୱାଧୀନତା ସଂଗ୍ରାମରେ କେତେ ଲୋକ କେତେ କଥା କରିଛନ୍ତି । ମୁଁ ଗୁଣ୍ଡି ଚିମୁଟା କଲି ଧୂଳି ଝାଡ଼ି ଦେଇ ଥିଲି ବୋଲି ମୋ ନାମ ଉତ୍କଳ ଶାର୍ଦ୍ଦୁଳ ଦେଇ ତାକୁ ପୁଣି କେହି ଖୁଣି ପକେଇବ ବୋଲି ଉତ୍କଳ ଗର୍ଦ୍ଦଭ ବୋଲି ଶ୍ରଦ୍ଧାରେ ଡାକୁଛନ୍ତି ।" ଏତକ କହି ପାରିବୁ ତ ?

"ମଲ ଏ ଗୋଟାଏ କି କଷ୍ଟ କାମ ?"

"ହାଁ ତମ କଂଗ୍ରେସବାଲଙ୍କୁ ନିଜ ଦେଶରୁ ନିଜେ ତାଡ଼େଇବା କଥା ପୁଣି କିଏ ଶିଖେଇବେ ।"

× × × ×

ସତକୁ ସତ କଟକରୁ ହୋମିଓପାଥି ଡାକ୍ତରଖାନା ୨୦ଟଙ୍କାରେ ଆଣି ୫ଟଙ୍କା ଗାଡ଼ିଭଡ଼ା ବାବଦ ପକେଇ ଗାଁରେ ପହଞ୍ଚିଲାବେଳକୁ ଦୋଛାଏ ବାବୁ ସଭା କରିଛନ୍ତି । ଗୋଟାଏ ଗଧ ଉପରେ ହରିଅଙ୍କୁ ବସାଇ ଗଧ ଟୋପି ପିନ୍ଧାଇ ଲକ୍ଷେ ଅରଖ ଫୁଲର ହାର କରି ଶୋଭା ଯାତ୍ରାରେ ବାହାରିଛନ୍ତି । ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି—ଉତ୍କଳ ଗର୍ଦ୍ଦଭ ଡାକ୍ତର ଶ୍ରୀ ହରିଶ୍ଚନ୍ଦ୍ର ରାଜଗୁରୁ ମହାପାତ୍ରଙ୍କ ଜୟ ।

● ● ●

# ଡାକ୍ତର ବିବର୍ତ୍ତବାଦ

ଅପ୍ରାକୃତିକ ଉପାୟରେ ପ୍ରଜନନ ଦ୍ୱାରା ଜୀବର ବିକାଶ ନୁହେଁ— ବିନାଶହିଁ ସମ୍ଭବ । ଏକଥାକୁ ଉଦ୍ଦେଶ୍ୟ ରଖି ଲେଖକ ରହସ୍ୟ କରି **Artifcial insemination**କୁ ମନୁଷ୍ୟେତରର ବିକାଶ କହିବା ସଙ୍ଗେ ସଙ୍ଗେ ବୈବାହିକ ସମ୍ପର୍କ ସମ୍ବନ୍ଧରେ ମଧ୍ୟ ସତ୍ୟ ବାଢ଼ିଛନ୍ତି ।

ମୁଁ ଖେଅସରେ କହୁଛି—ଗଳ୍ପ ଶୁଣନ୍ତୁ—ଭାରି ମଜା; ସମସ୍ତଙ୍କ ଜୀବନରେ ଛାମରେ ଘଟିବ—ଛାମରେ ମଧ୍ୟ ଘଟିବ ।

ମୁଁ ଯେ ଜଣେ ପ୍ରସିଦ୍ଧ ଓ ସିଦ୍ଧ ଡାକ୍ତର ଏ କଥା ବିଜ୍ଞାପନ ଦେବାର ଅବଶ୍ୟକତା ନାହିଁ । କେବଳ ସମସ୍ତେ ଜାଣିଛନ୍ତି ବୋଲି ନୁହେଁ—ମେଟ୍ରିମନିଏଲ କଲମରେ ବିଜ୍ଞାପନ ଛାଡ଼ିଲେ ଯେଉଁ ବୟସରେ ପାତ୍ରୀମାନଙ୍କର କୁମାରତ୍ୱ ଅସି ଅବଧାନ ଖଡ଼ଗାରରେ ଗଡ଼ାପଡ଼ା ହୁଏ, ସେ ସମୟରେ ସୀମା ରେଖା ପାର·

ହୋଇ ଦଶ ପନ୍ଦର ଜେଣିଙ୍କ ଅତେଇ ଗଲଣି । ଅତଏବ ଡାର୍ଉଇନ ବିଶେଷଜ୍ଞର ନିନ୍ଦା ପ୍ରଶଂସାକୁ ଭୟ ନ ଥିଲେହେଁ ଅବୁଝା ମନକୁ ବୁଝାଇବା ପାଇଁ ଡାର୍ଉଇନ ଅବସ୍ଥାରୁ ଯେ ମନୁଷ୍ୟର ଢାଞ୍ଚା ପଣ ଏ କଥା ଉଚ୍ଚସ୍ୱର ବାଢ଼େଇ ବାରମ୍ବାର ଘୋଷଣା ନ କଲେ ବଞ୍ଚିହେବ ନାହିଁ । ତେଣୁ ମୁଁ ଶହେବାର ଲକ୍ଷେ ବାର କହୁଛି— ହେ ପୃଥିବୀର ମାନବ ମାନବୀ, ମୋ କଥା ମାନ ସମସ୍ତେ ଡାର୍ଉଇନ ଦଳ । ଦେଖିବ ନଉର-ମଣିଷ ବା ମଣିଷ ଉଉର ସୃଷ୍ଟି superman (ଅତିମାନବ) ସର୍ଜନା ଅଚିରେ ହୋଇଯିବ ।

ଏହାହିଁ ଡାରଉଇନଙ୍କ ବିବର୍ତ୍ତବାଦର ଚରମ ପରିଣତି । ଜୀବର କ୍ରମବିକାଶରେ ମନୁଷ୍ୟ ଯେ ଅତି ମନୁଷ୍ୟ ହେବ ତାର ଅନ୍ୟ ନମୁନା ଏଇ ଡାର୍ଉଇନ ପଣ । ମୁଁ ଏହା ପ୍ରମାଣ କରି ଦେଖାଇ ଦେଇପାରେଁ ।

ବିବର୍ତ୍ତନ ଅର୍ଥ ଡାରଉଇନଙ୍କ evolution କ୍ରମବିକାଶ । ବିବର୍ତ୍ତନର ଅନ୍ୟ ଏକ ଅର୍ଥ ନ୍ୟାୟଶାସ୍ତ୍ରରେ କହନ୍ତି—ଯେଉଁଠାରେ ଯାହା ନାହିଁ ତାହା ଦର୍ଶନ କରିବା—ଯଥା ରଜ୍ଜୁରେ ସର୍ପଜ୍ଞାନ ବା ସର୍ପରେ ରଜ୍ଜୁଜ୍ଞାନ କିମ୍ବା ପୁରୁଷରେ ନାରୀଜ୍ଞାନ ବା ନାରୀରେ ପୁରୁଷଜ୍ଞାନ । ବୈଷ୍ଣବ ଗ୍ରନ୍ଥକାରମାନେ ଏକପ୍ରକାର ଲୀଳା ବିବର୍ତ୍ତର ବର୍ଣ୍ଣନା କରିଛନ୍ତି, ଯଥା—କାହ୍ନୁ ରାଈ—ରାଈ କାହ୍ନୁ । ରାଈ ପ୍ରେମରେ କାହ୍ନୁ ଗୋରି ହେଲେ ଓ କାହ୍ନୁ ପ୍ରେମରେ ରାଈ ଶ୍ୟାମ ହେଲେ । ଏବେ ସମ୍ବାଦପତ୍ରରୁ ଜଣାଯାଉଛି ଯେ ଜଣେ ସ୍ତ୍ରୀମେଲ୍‌ଦେବୀ ଚନ୍ଦ୍ରମୋହନ ହୋଇଛନ୍ତି, ଏବଂ ଅନେକଥର ଲିଙ୍ଗବର୍ତ୍ତନ କରି ପୁରୁଷ ନାରୀ, ନାରୀ ପୁରୁଷ ହେବା କଥା ଶୁଣା ଗଲଣି । ପୃଥିବୀରେ ଯେ ଅତିଶୀଘ୍ର ଡାର୍ଉଇନ ବାଦର ପ୍ରତିଷ୍ଠା ହେବ ଏବଂ ସାମ୍ୟବାଦ, ପୁଞ୍ଜିବାଦ, ଷ୍ଟାଲିନବାଦ, ମାଲ୍‌ଥସିଆନବାଦ ଅନ୍ୟ

ଲୋପ ପାଇବ ଏହାର ରଙ୍ଗିନ ସ୍ୱାକ୍ଷର ଏଇଥିରେହିଁ ମିଳୁଛି । କାଷ୍ଟୁଦାନ ପରେ ପୂର୍ବବର୍ଣ୍ଣିତ ଇଳା କନ୍ୟା ପରି ପ୍ରତ୍ୟେକ ମନୁଷ୍ୟ ଛମାସ ପୁରୁଷ ଓ ଛମାସ ନାରୀ ହେବେ । ତାହେଲେ ନେହେରୁଙ୍କର ଅଭି ବିବାହ-ବିଚ୍ଛେଦ ଆଇନ କରିବାର ଆବଶ୍ୟକତା ରହିବ ନାହିଁ । କାରଣ ଛମାସ ସ୍ୱାମୀ ସ୍ତ୍ରୀ ଉପରେ ଅତ୍ୟାଚାର କଲେ ଶାସ୍ତିର ପାଇଏ ତ ବନ୍ଧୁର ପାଇଏ ପରି ଅଭି ଛମାସରେ ସ୍ତ୍ରୀ ସ୍ୱାମୀ ହୋଇଯିବ । ସେତେବେଳେ ସମସ୍ୟା ପଡ଼ିବ—ଛମାସରେ ସନ୍ତାନ ହୋଇ ପାରିବତ ? ତାର ସମାଧାନ ହେବ—ସମସ୍ତେ ବାଡ଼ୁଅ ରହିବାରେ । ତେଣୁ ପୃଥିବୀ ଯେ ନିଶ୍ଚିତ ରୂପରେ ବାଡ଼ୁଅ ରାଜ୍ୟ ଆଡ଼କୁ ଧାଉଁଛି—ଏଥିରେ ସନ୍ଦେହ ନାହିଁ—ରାମ ରାଜ୍ୟ ଅତି ପୁରୁଣା ବୋଲି ।

ଅବଶ୍ୟ ବାଡ଼ୁଅ ହେବାର ଟେକନେକ ଅଜୁଅ ବର୍ତ୍ତମାନ ସମାଜରେ ଅଛି । ମାତ୍ର ସମସ୍ତେ ବାଡ଼ୁଅ ହେଲେ ତାହା ମଧ୍ୟ ସହଜରେ ସମାଧାନ ହୋଇଯିବ । ଆପଣମାନେ ବୁଝି ପାରିବେ ଯେ ବିବାହିତ ଜୀବନଠୁଁ ଅବିବାହିତ ଜୀବନ ଶତଗୁଣ ଭଲ । ଲଙ୍ଗୁଳଟାଏ ଅଧିକନ୍ତୁ ହେଲେହେଁ କେତେ ଅସଙ୍ଗ ଓ ଦୋଷଯୁକ୍ତ ।

ଆମେ ଥିଲୁ ସ୍ତ୍ରୀଜଣ କାମଦେବଙ୍କ ରାଜ୍ୟରେ ନିଷ୍କାମ ବା ବେକାର । ମାତ୍ର ମୋତେ ଛାଡ଼ି ବାକୀ ତିନିଜଣ ଯେତେବେଳେ ପ୍ରଜାପତିଙ୍କ ସେକ୍‌ସନରେ ଜୁନିଅର ଆସିଷ୍ଟାଣ୍ଟ କାମ ପାଇଗଲେ, ସେତେବେଳେ ମୁଁ ଗ୍ରନ୍‌ଥଟାଏ ଧରାଇ ଦେଲି କେବଳ ଭବିଷ୍ୟତର ସୁଖମୟ ସ୍ୱପ୍ନ ଆଶାରେ । ଭାବିଲି—ଟିକିଏ ଅପେକ୍ଷା କରିଯାଏଁ, ଆସନ୍ତା ଭୋଟରେ କଂଗ୍ରେସ ପକ୍ଷରୁ ଠିଆ ହୋଇ ଅନ୍ତତଃ ଡେପୁଟି ମିନିଷ୍ଟରଟାଏ ହେବିତ ! ମାତ୍ର ଫଳ ଫଳିଲା ଓଲଟା । ଭୋଟ ବ୍ୟାପାରଟା ପୂରାପୂରି ଟଙ୍କା ପଇସା ଉପରେ ନିର୍ଭର

ଙ୍କରେ ବୋଲି ମୁଁ ଆଦୌ ଜାଣି ନ ଥିଲି । ଏଟି ଗୁଣ ବୁଝିବା ମଣିଷ ନାହାନ୍ତି । ତେଣୁ ବର ନିର୍ବାଚନରେ ମୁଁ ସବୁବେଳେ ଟିକ୍ସଫିଆଙ୍କ ହୋଇ ଶେଷରେ ଏମିତି ଚକ୍ଷୁଆର ହୋଇଗଲି ଯେ ସାକ୍ଷାତ ଯେମିତି ଜେଲ୍‌ପଡ଼ା ଉପନିର୍ବାଚନରେ ମଙ୍ଗରାଜ । ଖାଲି ସେତିକି ନୁହେଁ—ଜଣେ ଜଣେ କୃପଣଙ୍କ ନାମ ଧରିଲେ ଯେମିତି ଦିନଟାଯାକ ଖାଇବାକୁ ମିଳେ ନାହିଁ, ସେମିତି ମୋ ନାମ ଧରିଲେ କୁଆଡ଼େ ପ୍ରଜାପତି ନିର୍ବାଚନ ଲଢ଼େଇରେ ପିଲେ ଫେଲ୍ ମାରନ୍ତି ବୋଲି ମୋତେ ଅମୁକ ମହାନ୍ତି କହନ୍ତି ।

ତା'ଛଡ଼ା, ଯାହାଘରେ ବାଡ଼ୁଅ ଝିଅ ବା ବହୂ ଥିବେ ତାଙ୍କ ଘରକୁ ଗଲେ ଚାକର ଖବର ଦିଏ—ବାବୁ କହିଲେ ସେ ଘରେ ନାହାନ୍ତି । ସୁତରାଂ ଯେଉଁମାନେ ବାଡ଼ୁଅ ହୋଇ ଲିଙ୍ଗରାଜ ମହାପ୍ରଭୁଙ୍କ ବାହନ ହେବାର ଆଶା ପୋଷିଥାନ୍ତି ସେମାନେ ନିଶ୍ଚୟ ନିରାଶ ହେବେ ।

ମାତ୍ର ମୁଁ ଏଥିପାଇଁ ଦୁଃଖିତ ନୁହେଁ । ମୋର ଯେଉଁ ବନ୍ଧୁମାନେ ମୋତେ ଶୋକ ସାଗରରେ ଭସାଇ ଦେଇ ବାହା ହୋଇ ଇହ ସଂସାର ଛାଡ଼ି ଗଲେ ସେମାନେ ପର ଘରେ ପଶିବାର ଯେଉଁ ଲାଇସେନ୍‌ସ ପାଇଛନ୍ତି ମୋର ସେ ସେ ଅଧିକାର ନାହିଁ— ଏଇଟାଇ ଦୁଃଖର କାରଣ । ମାତ୍ର ବାପଘରରେ ଢେଙ୍କି ଟିଲି' ବୁଢ଼ୀ ବେଶ୍ୟା ତପସ୍ୱିନୀ' ସଦୃଶ ବ୍ରହ୍ମଚର୍ଯ୍ୟ ରଖିଲେ ବି ସାଇକେଲ୍ ଟିକସ୍ ଗଣି ମିଉନିସିପାଲିଟି ପ୍ଲେଟ ଖଣ୍ଡିକ ଆଣି ଝୁଲେଇ ଦେଇଥିଲି ପରି ହକ ଥିଲେହେଁ ରାସ୍ତାରେ ସାଇକେଲ୍ ଚଲାଇଲାବେଳେ ମନ ଛକ ଛକ ନ ହୋଇ ଉପାୟ ନାହିଁ । କିଏ କଣ କହୁ ନ କହୁ ନିଜ ମନ ନିଜକୁ ଡରିଏ, ସାଇକେଲ୍ ଚଢ଼ି ହୁଏ ନାହିଁ । ଶକ୍ତି ଥିଲେ ମଧ୍ୟ ଅଶକ୍ତ ।

କିନ୍ତୁ ଯେଉଁମାନେ ବାହାହୋଇ ପଡ଼ିଛନ୍ତି ତାଙ୍କ ଭିତରୁ କିଏ ଗଲା ଛ'ମାସ ହେବ ନୂଆ ବ୍ୟାଟେରି ନ ପକାଇ ପୁଲ୍‌ସଠିକାକୁ ଜୁଲୁଲିଆ ପୋଛି ଟିପାବନ୍ଦା ଧରି ଛକପାଖରେ ଠିକ୍‌ଏ ଚିପି ଦେଇ ଡେଣିକି ଅନ୍ଧାରରେ ଅଧା ଜଳା ଅଧା ଧକ୍କା ମାରି ଚାଲିଲି ପରି ଚାଲିଛି ସଂସାର ପଥରେ । କାହାର ବା ବ୍ରେକ୍ ନାହିଁ, ବେଲ୍ ବି ନାହିଁ, ପୁରା ଇଣ୍ଡିଭିଡ୍‌ସେ ସାଇକଲ ଚଳାଇଛି ।

ଜଗନ୍ନାଥ, ଯତୀନ୍ଦ୍ର ଓ ଦୁର୍ଯ୍ୟୋଧନଙ୍କ ଭିତରୁ ଜଣକର ବ୍ରେକ୍ ( brake ) ନାହିଁ, ଜଣକର ବେଲ୍ ( bell ) ନାହିଁ, ଆଉ ଜଣଙ୍କର ବତୀ ( light ) ନାହିଁ ତିନିଙ୍କ ତିନିହେଁ ନୂଆ ସାଇକଲ ସାଙ୍ଗରେ ତିନୋଟି ସ୍ତ୍ରୀ ଆଣିଥିଲେ । ତିନିଜଣଙ୍କ ବିବାହ ତିନି ପ୍ରକାରରେ । ତାର କାରଣ ତିନିହେଁ ତିନି ପ୍ରକୃତି ବା ସ୍ୱଭାବର, ଯତୀନ୍ଦ୍ର ଟିକିଏ ଭାବ ଦୁର୍ବଳ—ଯାହାକୁ କହନ୍ତି sentimental. ଜଗନ୍ନାଥ କିନ୍ତୁ ବଡ଼ ବିଚକ୍ଷଣ, ବୁଦ୍ଧିଆ—ପକ୍କା ସଂସାରୀ, ଯାହା କରେ ଶହେ ଥର ଭାବିଚିନ୍ତି କରେ । ଆଉ ଗୋବର୍ଦ୍ଧନ ହେଉଛି ଗୋବର୍ଦ୍ଧନ ଅର୍ଥାତ୍ ଗୋବର ଗାଦି । ନିଜର କିଛି ନାହିଁ । ସବୁବେଳେ ବାପା କହୁ ନାହାନ୍ତି—ମା ମନା କରୁଛନ୍ତି ଇତ୍ୟାଦି ।

ଯେଉଁ ଦିନ ରମେଶ ମାଶିପାଇଁ ବିଷ ଖାଇ ମଲା, ସେହିଦିନ ଆମେ ଚାରିଜଣଯାକ ପ୍ରତିଜ୍ଞା କଲୁ ନାରୀ ଜାତିର ଏ ବିଶ୍ୱାସଘାତକତାର ପ୍ରତିଶୋଧ ନେବାକୁ ହେବ—ତେଣୁ ଆମେ ଅବିବାହିତ ରହି ଅନ୍ତତଃ ଗୋଟିଏ ବାଳକାର ଜୀବନ ନଷ୍ଟ କରିବୁ ।

ଯତୀନ୍ଦ୍ର, ସେହିଦିନଠୁ ଫୁଙ୍କାଳିଆ ହୋଟେଲର ପଟୋ, ଜଗନ୍ନାଥ ସୁଭାଷଚନ୍ଦ୍ରଙ୍କର ଆଉ ଦୁର୍ଯ୍ୟୋଧନ ପଢ଼ିଲା ମୋହମୁଦ୍‌ଗର ।

ମାଝ ପ୍ରଥମ ଗ୍ରୀଷ୍ମ ଛୁଟି ପରେ ଅଗ ଦୁର୍ଯୋଧନର ହଠଜ୍ଞାଟା ପ୍ରୀତିଜ୍ଞାରେ ପରିଣତ ହେଲା । କହିଲା—ଜଣ କରିବା ଭୁଲ, ବୋଲ ଭାଙ୍ଗିଲା—ବାପା ଯଦିଲେ—ଚିତର ପ୍ରୀତିମାପକଙ୍କ ପ୍ରିଅନ୍ତେ ସର୍ବ ଦେବତା, ଅକାଶକୁ ବଡ଼ ପିତା ମାତା ବଡ଼ ପୃଥିବୀ ଅପେକ୍ଷା ।

ମୁଁ ଭାବିଲି ବାସ୍ତବରେ, ଅଝ ଉପାୟ କଣ ! ଅକାଶଟା ଯଦି ଭାଙ୍ଗି ପଡ଼ନ୍ତା କି ପୃଥିବୀ ଯଦି ଫାଟି ପଡ଼ନ୍ତା ତେବେ ତ ମରିବା ଛଡ଼ା ଅନ୍ୟ ଗତ ନାହିଁ । ତା ଅପେକ୍ଷା ଭଲ ଇଏ ।

ତାପରେ ପଡ଼ିଲା ଯଜ୍ଞାନ୍ତ । ତାକୁ ହେଲା ଟାଇଫଏଡ଼ । ହାସପାତାଳରେ ଯୁଡ଼ଦେଇ ଅସିଲି । ଭଲ ହୋଇ ଅସିଲା । ମାଝ କଣ ହେଲା କଜାଣି ଟାଇଫଏଡ଼ଟା ତ ବାରମ୍ବାର ରିଲ୍ୟାପ୍ସ କଲା । ଶେଷରେ ଡାକ୍ତରମାନେ କୁଅଡ଼େ ନିରାଶ ହୋଇ କହିଲେ—ଅପଣ ଘରେ ମରିବେ ଯାଅନ୍ତୁ—ହାସପାତାଳର ମୃତ୍ୟୁ ସଂଖ୍ୟା ବଢ଼ାଇ ହେବ ନାହିଁ ।

ଡାକ୍ତରମାନଙ୍କର ଏତାଦୃଶ ନିଷ୍ଠୁରତା ଖବରକାଗଜକୁ ପଠାଇଥାନ୍ତା, ମାଝ ଡାକ୍ତର ଷଡ଼ଙ୍ଗୀଙ୍କର ଉଦାରତା ତାକୁ ମୁଗ୍ଧ କଲା । ସେ ତାଙ୍କ ଘରେ ତାକୁ ସ୍ଥାନ ଦେଇ ଚିକିତ୍ସା କଲେ ଏବଂ ପରିଶେଷରେ ଅମ୍ଭେମାନେ ତାକୁ ଚିରଦିନ ପାଇଁ ହରାଇଲୁଁ । ଅମ୍ଭମାନଙ୍କୁ ଶୋକପ୍ରସ୍ତାବ କରିବାକୁ ପଡ଼ିଥିଲା ସବ୍‌ରେଜେଷ୍ଟ୍ରର ଖାତାରେ—ସାକ୍ଷୀ ସ୍ୱରୂପ ।

ସବୁଠୁଁ ଟାଣୁଆ ଜଗଦୀଶ । ଯେତେଥର ପ୍ରସ୍ତାବ ଅସିଲା—ସେ ଷ୍ଟେ ବୋର୍ଡ଼ ମନା କରିଦେଲା । ମୋତେ କହେ—ମୁଁ ସତ୍ୟ ଲଙ୍ଘି ପାରିବ ନାହିଁ । ମାଝ ଦିନେ ଯାଇଁ ଦେଖିଲି, ସେ ନ ଥିବା ବେଳେ, ତା ନୋଟ ଖାତାରେ ଲେଖାଥିଲା—

| ଛାତ୍ରୀନାମ | ସୌନ୍ଦର୍ଯ୍ୟ | ବିଦ୍ୟା | ଚୌତୁର୍କ | ସ୍ୱଭାବ | କୁଳ |
|---|---|---|---|---|---|
| ମିନତି | ୧୦୦ରୁ୧୦ | ୧୦୦ରୁ୫୦ | ୧୦୦ରୁ୩ | ୧୦୦ରୁ୨୦ | ୧୦୦ରୁ୪୦ |
| ସାନ୍ତ୍ୱନା | ୧୦୦ରୁ୧ | ୧୦୦ରୁ୮୦ | ୧୦୦ରୁ୭୦ | ୧୦୦ରୁ୫ | ୧୦୦ରୁ୯୦ |
| ସୁଭଦ୍ରା | ୧୦୦ରୁ୯୦ | ୧୦୦ରୁ୯୫ | ୧୦୦ରୁ୧ | ୧୦୦ରୁ୨୫ | ୧୦୦ରୁ୨୫ |
| କୁନ୍ତଳା | ୧୦୦ରୁ୩୦ | ୧୦୦ରୁ୮୦ | ୧୦୦ରୁ୪୦ | ୧୦୦ରୁ୧୦୦ | ୧୦୦ରୁ୯୦ |

ମାତ୍ର ଏହା ଭିତରୁ ଯେ କୌଣସି ଗୋଟିକୁ ବିଭା ନ ହେଇ ମୋତେ ଜଣେ ପତ୍ର ଲେଖିଥିଲା—ମୁଁ ଯେଉଁଥିପାଇଁ ବିଭା ନ ହେବାକୁ ପଣ କରିଥିଲି—ଠିକ୍ ସେଇଥିପାଇଁ ବିଭା ହେଲି । ଯେତେ ସୁନ୍ଦରୀ ଝିଅ ମୋତେ ବିଭା ହେବାକୁ ମନ କରିଥିଲେ ସମସ୍ତଙ୍କୁ ନୟନ ଜଳରେ ଭସାଇ ମୁଁ ପରମେଶର ହତ୍ୟାକାରଣୀ କାତର ପ୍ରତିଶୋଧ ନେଇଛି । ତାର ଆତ୍ମା ଅଜି ହସୁଥିବ । ମୁଁ ଗୋଟିଏ ଅତି ଅସୁନ୍ଦରୀ ଝିଅ ବାହା ହୋଇଛି ।

ତା ପରେ ଶୁଣିଲି ଜଗଦୀଶ ଯାଇଛି ବିଲାତ—ସ୍ନାତକୋତ୍ତର ଶିକ୍ଷା ନିମନ୍ତେ—ଡକ୍ଟରେଟ୍ ପାଶ୍ କରି ଆସିବ ।

* * * *

ଇତି ମଧ୍ୟରେ ତିନିବର୍ଷ ବିତିଗଲା—୧୯୫୧ରୁ ୫୪ । ଜଣେ ଅକସ୍ମାତ୍ ତିନିଜଣଯାକ ଏକ ସଙ୍ଗରେ ଆସି ମୋ ଗୁହାଳରେ ହାଜର । ମୋର ଗୋଟେ ଚାଳଟିକୁ ଦେଖି ଦେଖି ଗୁହାଳ ଆଖ୍ୟା ଦେଇଥାନ୍ତି । ସବୁ ଜିନିଷ ଗଣ ଗଣ ହୋଇ ପଡ଼ିଥାଏ ବୋଲି ନୁହେଁ—କାରଣ ଅନେକଙ୍କ ମତରେ ମୁଁ ଗୋଟାଏ ବଳଦ । ମୁଁ କିନ୍ତୁ ଏଥିରେ କ୍ଷୁର୍ଣ୍ଣ ହୁଏନାହିଁ । କାରଣ ବଳଦମାନେହିଁ

ପୃଥିବୀକୁ ବଳ ଦେଇଥାନ୍ତି—ତେଣୁ ବଳଦ; ଷଣ୍ଢମାନେ ବଳଦ ଭଳି ହଳ କରି ପାରିବେ ନାହିଁ କି ଗାଡ଼ି ଟାଣି ପାରିବେ ନାହିଁ । ଗାଈମାନେ କେବଳ ପିଲାଙ୍କ ପାଇଁ ଖାଦ୍ୟ ଯୋଗାନ୍ତି । ବଳଦ ବାକୀ ସମସ୍ତଙ୍କ ପାଇଁ । ଭଗବାନଙ୍କର ଉଚିତ ଥିଲା—ସଂସାରକୁ ବଳଦ ସଂସାର କରି ସୃଷ୍ଟି କରିବା । କିନ୍ତୁ ତା ନ କରି ଦୁର୍ଯୋଧନ, ସତୀନ୍ଦ୍ର, ଜଗଦୀଶ ପ୍ରଭୃତିଙ୍କୁ ସର୍ଜନା କରି ନିଜ ସଂସାରର ସମସ୍ତ ଅନିଷ୍ଟ ଘଟାଇଛନ୍ତି ।

ମୁଁ ତିନିଷଣ୍ଢଙ୍କୁ ବସାଇଲି । ସଞ୍ଜ ରତରତ । ବର୍ଷାଦିନ । ଟୁପୁଟୁପୁ ବର୍ଷା ପଡ଼ୁଛି । ଦୁଇଟା ରଞ୍ଜାକୁ ରଞ୍ଜିତ କରି ବାଡ଼ରେ ମାଡ଼ୁଛି ଗୋଟାଏ କହ୍ନି ଗଛ ତୃତୀୟ ରଞ୍ଜାକୁ ତାର ସହସ୍ରବାହୁ ବିସ୍ତାର କରି । ଫୁଲଗୁଡ଼ିକ ସଞ୍ଜେ ଫୁଟି ସକାଳେ ଯାଉଛି । ମାତ୍ର ଫଳ ଧରୁନାହିଁ । ତିନିଙ୍କି ତିନିହେଁ କହିଲେ—ନିଶାମଣି ତୋ ମୁହଁ ଚାହିଁଲେ ମାଇପେ ବାଞ୍ଝ ହେବେ ।

ମୁଁ କହିଲି—ଭାଇ, ଯେଉଁ ଫୁଲର ଫଳ ନ ଧରେ ତାର ବାସ ସବୁଠୁ ବେଶୀ । ମୋ କହ୍ନି ଫୁଲର ବାସ ଅଛି ।

ସମସ୍ତେ ହସି ଉଠିଲେ । ମୁଁ କହିଲି ତମ ଫୁଲ ସବୁ ଯେ ଫଳିଛନ୍ତି—ସେ ଫୁଲରୁ ତମେ ମହକ ପାଉଛ କି ?”

ସମସ୍ତେ ପରସ୍ପରର ମୁହଁକୁ ଚାହିଁଲେ । ଯେମିତି ପ୍ରତ୍ୟେକ ପ୍ରତ୍ୟେକକୁ ପଚାରୁଛି—କେହି ଯେମିତି ଜାଣନ୍ତି ନି କହୁଛି । କେବଳ ଦୁର୍ଯୋଧନ ହସି ଉଠିଲା ।

ମୁଁ ପଚାରିଲି—“ଆଚ୍ଛା ସତ କୁହ—ତମେ କଣ ବାପହୋଇ ସମସ୍ତେ ସୁଖି ହୋଇଛ ?

ସତୀନ୍ଦ୍ର କହିଲା—“ଭାଇ, ଯୋ ଖାୟା ସୋ ପସ୍ତାୟା—ଯୋ ନହିଁ ଖାୟା ସୋଭି ।”

ଜଗଦୀଶ କହିଲା—"ବିଲକୁଲ ଠିକ୍ ।"

ମୁଁ ପଚାରିଲି—"ଦୁର୍ଯ୍ୟୋଧନ ?"

ଦୁର୍ଯ୍ୟୋଧନ କହିଲା—"ଭାଇ, ମୋତେ ତୋ ଗାଯ୍ନା ନାହିଁ ମୁହେଁ କପଟେ ଫିଲସ୍ଫା ହେବି ।"

ଆମେ ସମସ୍ତେ ହସିଉଠିଲୁ । କାରଣ ମନହେଲା ଦୁର୍ଯ୍ୟୋଧନର ଏବେ ବି ବୁଦ୍ଧି ବୃଦ୍ଧି ହେଲନାହିଁ ।

ମୁଁ କହିଲି—"ଅଚ୍ଛା, ମୁଁ ତମକୁ ଜଣଜଣକା ପ୍ରଶ୍ନ ପଚାରିବି—ତମେ ଠିକ୍ ଠିକ୍ ଉତ୍ତର ଦେବ ।"

ସମସ୍ତେ ହଁ ଭରିଲେ…ମୁଁ ଶପଥ କରାଇନେଲି । ଅଧ ସତୀଶକୁ ପଚାରିଲି, "ସତ, ସତ କହ, ତୁ ସେ ଡାକ୍ତରଣୀକୁ କେମିତି ବାହାହବାକୁ ମନକଲୁ କହ । ତୁ ତ ନିତ୍ୟେ ଆମ ଆଗରେ ଅଖିଦେଖା ତା'ର କେତେ ପ୍ରେମ କାହାଣୀ କହୁ । ମନେ ଅଛି ଜଗଦୀଶ ?"

"ତା ଆଉ ମନେ ରହିବ ନାହିଁ" ଜଗଦୀଶ କହିଲା ।

ସତୀଶ ଅପ୍ରସ୍ତୁତ ହୋଇ ପଡ଼ିଲା । ତାପରେ ଟିକିଏ ସାହସ ଭରି ଦମନେଇ କହିଲା—"ଯେ ଜୀବନରେ ପ୍ରେମ ନ କରିଛି ସେଇଟା ଗଣ୍ଡମୂର୍ଖ । ମୁଁ ତାକୁ ଦୟା କରେ । ତା ଭଲ ଦରଦ କେହି ନାହିଁ ପ୍ରେମ କରିଥିଲେ ସିନା ଜାଣିଥାନ୍ତୁ । ଅପରେ ପ୍ରେମର ଆଉ ଗୋଟା ଅଛି ଥାଏ ସେ ଅସୁନ୍ଦରୀକୁ ସୁନ୍ଦରୀ କରାଏ, ଅସତୀଙ୍କୁ ସତୀ ଆଖ୍ୟା ଦିଏ ।"

"ତାହେଲେ ତ ତୁ ନିଶ୍ଚୟ ସୁଖୀ—ଅଠରେ ଅପ୍‌ଟୁଡ଼ ଗାନା ପର ବୁଟ ପରନା…କିଏ କହିଲେ କି ଯାଏ ?"

କିନ୍ତୁ ଭାଇ, ମୁଁ ସିନା ଘୁଞ୍ଚୁଥା କହିଲି—ପୁଣି ଫାନ୍ଦ କଥାଟା ଶୁଣ । ପଙ୍କରେ ଗୋଡ଼ ଖଳିଗଲା ବେଳେ ଅସ୍ତିମ ଲାଗେ ।

ଜାଣଛ ? ପ୍ରେମର ଏ ଯେଉଁ ନୂଆ ଅର୍ଥ ତାକୁ ଗ୍ରହଣ କରିବା ପାଇଁ କ୍ଷେତ୍ରବର୍ଷ ଲାଗେ ନାହିଁ ଦିଓ ପରେ ଛମାସ ବା ଖୁବ୍ ବେଶି ବର୍ଷେ । ତା ପରେ ସେ ଅର୍ଥ ଫୁଟିଯାଏ । ସେତେବେଳେ ମନେ ହେବ ପ୍ରେମ ଯେ କରନ୍ତି ତାଠୁ ବଳି ହତଭାଗା ଅଉ କେହି ନାହିଁ ତାର ଏକମାତ୍ର ଉତ୍ତମୁକ୍ତ ପଣ୍ଡିତ ନେହେରୁ ଓ ବନ୍ଧୁ ଛୋଡ଼ ଅଛନ୍ତି ।"

ମୁଁ କହିଲି—"ତେବେ ଜଗଦୀଶ ଖୁବ୍ ଭୁଲ । ସେ ତ ପ୍ରେମକର ବାହା ହୋଇନାହିଁ । ସେ ଯେଉଁ ଝିଅଟିକୁ ପ୍ରେମ କରିଛନ୍ତି ନାହିଁ ବାହା ହେଉଛନ୍ତି···ଏଥିରେ ସେଣ୍ଟିମେଣ୍ଟ ନାହିଁ । ଭବିଷ୍ୟତ ଜୀବନର ଉନ୍ନତି ପାଇଁ ବୁଦ୍ଧି ବିଚାର କରି ବାହା ହେଲି ।"

ଜଗଦୀଶ କହିଲା ଗୋଟାଏ ଦୀର୍ଘ ନିଶ୍ୱାସ ଛାଡ଼ି—"ହଁ, ସେ କଥା ଅନ୍ତତଃ ବାହାକୁ ବିଚାର କଲେ ଠିକ୍ । ମାତ୍ର ତୁ ଯଦି ବାହା ହୋଇଥାନ୍ତୁ ତେବେ ବୁଝିଥାନ୍ତୁ ଯେ ବିବାହଟା sentiment ବା ଭାବ ଦୁର୍ବଳତା ନୁହେଁ କିମ୍ବା reasoning ବା ବୁଦ୍ଧି ବିଚାର ଦେଇ ତାକୁ ସାବ୍ୟସ୍ତ କରଯାଏ ନାହିଁ । ଯିଏ କାରଣ ଖୋଜି ବାହାହୁଏ— ତାଠୁ ବଳି ବୋକା କେହି ନାହିଁ । କାରଣ ବିବାହ ତରଦାନ ଅକାରଣ—ପ୍ରେମଟା ଅହେତୁକୀ ।

ମୁଁ କହିଲି—"ତୁ ଗୋଟାଏ ଦର୍ଶନ କହୁଛୁ ତା ହେଲେ ଯେ —ମୁଁ ବାନ୍ଧୁ ବର୍ଷର୍ଗ କିଛି ବୁଝି ପାରୁନାହିଁ ।"

ଜଗଦୀଶ କହିଲା—'ଉଦାହରଣ ସ୍ୱରୂପ, ମୁଁ ବାହା ହେଲି ଗୋଟିଏ ଅସୁନ୍ଦରୀ, ମାତ୍ର ବଡ଼ ଲୋକର ଝିଅ । ଶଶୁର ଟଙ୍କାରେ ବିଲାତ ଗଲି । ବଡ଼ ଚାକିରୀ ପାଇଲି, ମୋଟା ଦରମା । ମାତ୍ର ବର୍ତ୍ତମାନ ମନ କ'ଣ କହୁଛି ଜାଣୁ ?—ଏଇ ମାଇକିନିଅଟା ଅଉ ତା'ର ତେଲଗୁଣୀ ସୋଡପର ପିଲଗୁଡ଼ାକ ଯଦି ନଥାନ୍ତେ ମୁଁ ଖୁବ୍

ସୁଖ ଆରାମରେ ଥାନ୍ତି । ମୋର ଖର୍ଚ୍ଚ ବଞ୍ଚିଥାନ୍ତା । ବ୍ୟାଙ୍କ ବାଲାନ୍ସ ବଢ଼ିଥାନ୍ତା । ମୁଁ ମଧ୍ୟ ଯଶୋଦ୍ ପରି ଭାବେ—ଜାତେ ରହେ ନେହେରୁ ଅଜର୍, ତୁମ୍‌ର ହିନ୍ଦୁ କୋଡ଼—କେବେ ପାସ୍ ହେବ କେଜାଣି ।"

ଭାବିଲି — ଜଗଦୀଶ ପ୍ରକୃତରେ ସ୍ତ୍ରୀକୁ ବାଘ ନ ହୋଇ ଟଙ୍କାକୁ ବାଘ ହେଉଛନ୍ତି ବୋଲି ଏପରି କହିପାରୁଛି । ସେ ଅନ୍ୟ ପ୍ରକାର ଭାବେ ଟଙ୍କା ଲୋଭ ଛାଡ଼ି ସୁନ୍ଦରୀଟିଏ ବାଘ ହୋଇଥାନ୍ତା—ଅବସ୍ଥା ଉଠୌଦ୍ଧତ । ସେତେବେଳେ କହୁଥାନ୍ତା—ଟଙ୍କାରେ ଦାନା ନ ଥିଲେ ସୌନ୍ଦର୍ଯ୍ୟ କି ମହଜା ଦିବ—ଅର୍ଥାଭାବେ ସୌନ୍ଦର୍ଯ୍ୟରେ କି ଲାଭ ?

ବାକୀ ରହିଲା ଦୁର୍ଯ୍ୟୋଧନ । ପଚାରିଲି—"ବାବୁ କହୁ ପଚାଅ, କହ ପଚାଅ—ତମର ଭାନୁମତୀଟି କେମିତିକା ?"

କହିଲା—"ଘୁଅ ତ୍ରି ଖଡ଼ଗା ରଞ୍ଜିତହସ୍ତେ
ଭଗବତୀ ଭାରତୀ ଦେବୀ ନମସ୍ତେ ।"

"ତୁ ଅଜାଯାଏ ସହ୍ୟ କରି ରହୁଛୁ କାମିତି ? ତାକୁ ଛାଡ଼ପତ୍ର ଦେଇ ଦେବା ଉଚିତ । ଅପେକ୍ଷା କର, ହିନ୍ଦୁ କୋଡ଼ ବିଲ୍‌ଟା ପାଶ୍ ହେଇଯାଉ ।"

"ଭାଇ, ମୋ ବାହା ତ ଜବାହରଲାଲଙ୍କ କୋଟରେ ହୋଇ ନାହିଁ, ଯାହା କୋଟରେ ହୋଇଛି ତାଙ୍କ ପାଖରେ ସେଠି ନାଲିଶ କରୁଛି ଡ୍ରାଇଭର୍ସ ପାଇଁ, ସବୁ ଦରଖାସ୍ତ ନାମଞ୍ଜୁର । ଏଥିକୁ ମୋର କି ଉପାୟ ?"

ସମସ୍ତେ ହସିଲେ । ମୁଁ କହିଲି—"ଆରେ ବାପ୍ରା ସିନା ସେ କରାଇଲେ—କେବଳ ଗଣ୍ଠି ତୋ' ଉପରେ—ତାଙ୍କ ଉପରେ ନୁହେଁ ତ ? ମୁଁ ଦେଖୁଛି—ତୋର ନା ଅଛି ଜଗଦୀଶର ହେତୁ

( reasoning ) ନା ଅଛି ସଭ୍ୟତାର ଭାବପ୍ରବଣତା (sentiment)"

ଦୁର୍ଯୋଧନ କହିଲା—"ହଁ ଠିକ୍ କହିଛୁ । ବାହା ହେଲାବେଳେ ମୋର ସେ ଦୁଇଟା ଯାକର ଅଭାବ ଥିଲା । ଏବେ ତ ଦୁଇଟାଯାକର ଠେଣା ଠେଣି ମଝିରେ ମୁଁ ଖୁମ୍ବ କଲା ପିଅ ହୋଇଯାଉଛି । ଯଜାଟିକୁ ନେଗେଟିଭ ଭୂଇ ନ ହେଲେ ବଞ୍ଚିଲା ଜଲେ ନାହିଁ । ସେଣ୍ଟିମେଣ୍ଟ ରିଜନର ସଂଘର୍ଷ ହେଉଛି ଜୀବନ । ଏ ଜୁଆଳି ଲଢ଼ାଲାପରେ ସେଣ୍ଟିମେଣ୍ଟ ମୋତେ ଯେତକ ଅଟେଇବାକୁ ପ୍ରେରଣା ଦେଉଛି— ରିଜନ୍ ସେତକ ଅରଣା ହେବାରୁ ରକ୍ଷା କରୁଛି । ବାପ୍ପା ତ ସେଇଥିପାଇଁ ହେବା କଥା, ସେଣ୍ଟିମେଣ୍ଟରେ ଅମେ ମାଉଁଗୋଲ ଲାଗୁ, ପ୍ରେମ ବି କରୁଁ । ରିଜନ୍ ଅମର କୋର୍ଟକୁ ଯିବା ବାଟ କଳାଧଏ ଅଭ ଫଲେ ପିଲାଛିଲାଙ୍କ ବାପ ମା ହେବା ଦୁର୍ଭାଗ୍ୟରୁ ରକ୍ଷା କରେ । ସେଣ୍ଟିମେଣ୍ଟକୁ ରିଜନ୍ କଣ୍ଟ୍ରୋଲ କରେ, ଅଉ ରିଜନ୍‌କୁ ସେଣ୍ଟିମେଣ୍ଟ ଧଏ ପ୍ରେରଣା । ଅମ ପକ୍ଷରେ ପଣ୍ଡିତ ନେହେରୁଙ୍କ ଥାଇନ ଝଙ୍କାମି ।

ଦାଣ୍ଡରେ ଓଡ଼ିଶା ସରକାରଙ୍କ ପ୍ରଚାର ବିଭାଗ ମଟର୍ ମାଇକ ମୁହଁରେ କହୁଛି—"ପଶୁ ଡାକ୍ତରଖାନାରେ ବିନା ପଇସାରେ ବଳିଷ୍ଠ ବାଛୁରୀ—ଆପଣଙ୍କ ଗାଈ ପାଳିଥିଲେ ପଠାଇ ଦିଅନ୍ତୁ—ଯେ କୌଣସି ସମୟରେ ଅର୍ଟିଫିସିଏଲ ଇନ୍‌ସେମିନେସନ ହୋଇ ଗାଈ ଫଳ ଯାଇପାରିବ ।"

ମୁଁ 'ଦୁର୍ଗା' କହି ଚିତ୍କାର କରି ଉଠି କହିଲି—"ଜୟ ବାଡ଼ୁଅରଙ୍କ କୀ ଜୟ ! ଉଚ୍ଚି ଡାରଉଇନ୍ କୀ ଜୟ ! ସୁପରମ୍ୟାନ୍ କୀ ଜୟ !" ବିବର୍ତ୍ତବାଦକୀ ଜୟ !"

ବନ୍ଧୁମାନେ ଡାକୁଥାନ୍ତି—"ଜଶାମଣି, ଜଶାମଣି; ତୁ କ'ଣ ପାଗଳ ହେଲୁ ?"

ମୁଁ ବକ୍ତୃତା ଝାଡ଼ୁଥାଏ—"ହେଇଟି ଦେଖ, ଡାରୱଇନ କିଭଳି ଭବିଷ୍ୟତ ଦ୍ରଷ୍ଟା । ଭୂତ ଭବିଷ୍ୟତ ସେ ଅବଶ୍ୟ ଜାଣି ପାରିଥିଲେ । ସେ ମନୁଷ୍ୟର ପୂର୍ବ ପୁରୁଷ ଯେପରି ମାଙ୍କଡ ଭିତରେ ଖୋଜି ପାଇଥିଲେ—ସେହିଭଳି ମନୁଷ୍ୟର ଉତ୍ତରାଧିକାରୀ ମଧ୍ୟ ବାଡ଼୍‌ଅ ଭିତରେ ଅଛି ବୋଲି ସେ ସୂଚନା ଦେଇଛନ୍ତି । ହେଇଟି ଶୁଣ—ଆର୍ଟିଫିସିଏଲ ଇନ୍‌ସେମିନେଶନ—ମାନେ କୀଟସଙ୍ଗ ବପନ-କ୍ରିୟା—ବେଭ୍ରେ ବେଭ୍ରେ—ଏକବାର୍ ଆନନ୍ଦେ ବୋଲ ବାଡ଼୍‌ଅ ଜଶାମଣି କୀ ଜୟ ।"

ଜଗଦୀଶ କହିଲା—"ମହାନ୍ତି ମହାନ୍ତି—ତୁ ପ୍ରକୃତିସ୍ଥ ହୁଅ—Come to sense"

କହିଲି—"ପ୍ରକୃତି ? ଅପ୍ରାକୃତ ଇନ୍‌ସେମିନେଶନ ଯୁଗରେ ପୁଣି ପ୍ରକୃତିସ୍ଥ ।"

ଦୁର୍ଯ୍ୟୋଧନ ଡାକିଲା—ମହାନ୍ତି ।

ହସି କହିଲି—'ହା-ହା-ହା- ମହାନ୍ତି, ଜଶାମଣି ମହାନ୍ତି ? ବାଡ଼୍‌ଅର ବର୍ଦ୍ଧନବାଦୀ ସଂସାରେ ଜଶାମଣି କେବଳ ଜଶାମଣି ମହାନ୍ତି ନୁହନ୍ତି, ଜଶାମଣି ଦେବୀ ମଧ୍ୟ ନୁହନ୍ତି । ଜନ୍ତୁଆର ମଞ୍ଚର ଜଶାମଣି—ଜମ୍ବା ମିସ୍ ଜଶାମଣି ।

ପୋଷ୍ଟମ୍ୟାନ ଡାକିଲା ବାବୁ ଟେଲିଗ୍ରାମ !

ଦଉଡ଼ଯାଇ ଖାମ ଖୋଲି ଦେଖିଲି—ଭାଇସ୍‌ଚାନ୍‌ସେଲର ଲେଖିଛନ୍ତି "ଆପଣଙ୍କ ବାଡ଼୍‌ଅର ବର୍ଦ୍ଧନବାଦ ଥିସିସ୍ ଜମନ୍ତ୍ରେ ଆପଣଙ୍କୁ ବିଶ୍ୱବିଦ୍ୟାଳୟ ପକ୍ଷରୁ ଅଗ୍ରୁର୍ଯ ଉପାଧି ମିଳିଲା ।

ଜଗଦୀଶ ମୁହଁ ଫିକା ପଡ଼ିଗଲା । ଯତୀନ୍ଦ୍ରର ସବୁ ପାଣି ଫାଟିଗଲା । ଅଉ ଦୁର୍ଯୋଧନ କହିଲା—ଏ ପାଗଳା ଦୁନିଆରେ ଅଉ ଅମର ସ୍ଥାନ ନାହିଁ ।

ମାଜ ମୁଁ ବର୍ତ୍ତମାନ ପ୍ରତି କଲେଜର ଛାତ୍ର ଛାତ୍ରୀ ସଂଘ ପକ୍ଷରୁ କେବଳ ଅଭିନନ୍ଦନ ପାଇବାରେ ଲାଗିଛି ।

# ଯଖ

ବର୍ତ୍ତମାନ ଦୁନିଆରେ ଭୌତିକ ଉନ୍ନତିର ଭିତ୍ତି ଯେପରି ଅସତ୍ୟ ଓ ଅନାଚାର ଉପରେ ନିର୍ଭର କରୁଅଛି—ଏବଂ ସମାଜର ତତ୍‌ପ୍ରତି ସହନଶୀଳତା ଏତେ ନିର୍ଲଜ୍ଜ ଯେ ଲେଖକଙ୍କର ତତ୍‌ପ୍ରତି ଏ ଶ୍ଳେଷାତ୍ମକ ପ୍ରହାର ଯଥେଷ୍ଟ ନୁହେଁ ।

ସାରା ଓଡ଼ିଶାରେ ଯଖ ଢେଠାର ବହୁଳ ପ୍ରଚୁର ଅଛି କି ନାହିଁ ଜାଣିନାହିଁ । କିନ୍ତୁ ଆମଅଡ଼େ ଯଖ ମାନେ । ଭାଷାକୋଷକାର ଥରେ କହୁଥିଲେ—ଯକ୍ଷ ରକ୍ଷ କିନ୍ନରଙ୍କ ଭିତରୁ ଯଖ ବା ଯକ୍ଷ ପ୍ରଥମ । କୁବେର ପୁରର ଅଧିବାସି ହେଉଛନ୍ତି ଯକ୍ଷ । କାଳିଦାସଙ୍କ ମେଘଦୂତର ନାୟକ ଯକ୍ଷ କଥା ସମସ୍ତେ ଜାଣନ୍ତି । ଆଜି ଦୁନିଆରେ ଗାମୁଛା ହଜିଲେ ଯେଉଁମାନେ ଦାବୀ ଛାଡ଼ନ୍ତି ତାଙ୍କ ନାଁ ମଧ୍ୟ ଯଖ ।

ବିକ୍ରମପୁର ଗାଁରେ ଥରେ ଗୋଟିଏ ଯକ୍ଷ ମାଡିଲା । ଏ ଭୂତ ପ୍ରେତ ଭଳି ଗୋଟିଏ ଶୂନ୍ୟ ବା ବାଷ୍ପମୟ ପିଣ୍ଡ । ଅଥଚ ଏହାର ସ୍ଥୂଳକ୍ରିୟା ଅଛି । ବିକ୍ରମପୁର ଗ୍ରାମର ସମସ୍ତେ ଦେଖିଛନ୍ତି, କିନ୍ତୁ କେହି କେବେ ତା ପାଖକୁ ଯାଇ ନାହାନ୍ତି । ଦୂରରୁ ଥାଇ ସମସ୍ତେ ନମସ୍କାର କରି ଆଖି ବୁଜି ବୁଜି ଆପଣା ଘରକୁ ପଳାଇ ଆସନ୍ତି । ଆଖି ଖୋଲିଲେ ସର୍ବନାଶ କିମ୍ବା ଷଡୈଶ୍ୱର୍ଯ୍ୟ ଲବ୍ଧ କଥାରୁ କହେ । ଯକ୍ଷ ହାବୁଡ଼ରେ ଯିଏ ପଡ଼େ ଯଦି ତାର ଭାଗ୍ୟ ଟେଢ ଥାଏ ତେବେ ସେ ଘଡ଼ିକରେ କୋଟିପତି ହୋଇଯିବ । ନହେଲେ ସେଇଟି ସ୍ୱର୍ଗ ପ୍ରାପ୍ତି ।

ଯେଉଁମାନେ ଯକ୍ଷକୁ ଦେଖିଛନ୍ତି ବା ଯକ୍ଷର ମୁହାଁମୁହିଁ ହୋଇଛନ୍ତି—ଉବୁର ଅସି ସେମାନେ କହନ୍ତି—ସେ ଅବର୍ଣ୍ଣନୀୟ ରୂପ । ସେ ଆଗରେ ଥିଲେ ମଧ୍ୟ ତମେ ଚାହିଁ ଝଲକା ହୋଇଯିବ । ସେ ଖାଲି ଗୋଟାଏ ଧବଳ ଜ୍ୟୋତି । ଠଙ୍କାଠାକୁ ଘସି ଘସି ପାଲିସ୍ କରି ସୂର୍ଯ୍ୟ କିରଣ ପଡେଇଲେ ଯେମିତି ଚକ୍‌ମିକ୍ ମାରନ୍ତା—ସେମିତି । ତାକୁ ଚାହିଁ ହେବ ନାହିଁ । ଯେଉଁମାନଙ୍କ ତଣ୍ଟି ଚପି ଯକ୍ଷ ମାରିଦେଇଛି—ସେମାନେ କହନ୍ତି—ଯକ୍ଷର ପଞ୍ଝା ହାତଅର ଅଛି—ତା ନହେଲେ ତଣ୍ଟି ଚାପିବ କିଏ ? ଯେଉଁମାନେ ବିବେକୀ ଓ ବୁଦ୍ଧିମାନ, ତାହାର ଅଡ଼ୁଆରେ ନଥାନ୍ତି, ଯକ୍ଷ ଅଛି ବୋଲି ଜାଣିଲାକ୍ଷଣି ଆଖି ବୁଜି ବୁଜି ଦୁର୍ଗେ ଦୁର୍ଗତିନାଶିନୀ ମା କହି ଘରକୁ ଫେରି ଆସନ୍ତି । ସେମାନେ ଯେଉଁ ବର୍ଣ୍ଣନା କରନ୍ତି ସେ ଅପୂର୍ବ ।

ଆଜି କେଉଁଠି କାର ଯକ୍ଷ କେମିତି ବା କେଜାଣି—ଏଇ ବିକ୍ରମପୁର ମୁଣ୍ଡରେ ଯେଉଁ ଯକ୍ଷ ସେ ବଡ଼ ଭାରି ଯକ୍ଷ । ତା

କୃପାରୁ ବାଚମ୍ପତିର ମିଶ୍ରଙ୍କ ଘରର ବଢ଼ନ୍ତି । ତାରି କୃପାରୁ ବାଚମ୍ପତିର ମହାପାତ୍ର ଅଜି ମନ୍ତ୍ରୀ ।

ଗୁରୁବାର ଦିନ ସନ୍ଧ୍ୟାରେ ଫାସିଦିଅ ବରଗଛ ଡାଳରେ ଜଗି ବସିଲେ—ଯଖକୁ ଯେ ପାରେ ସେ ଦେଖିବ । କିନ୍ତୁ ଏତେ ସାହାସ କେବେ କେହି କରି ପାରି ନାହାନ୍ତି । ଯିଏ ଯଖକୁ ଭେଟିଛି ସେ ଦୈବାତ୍ ଅକସ୍ମାତ୍ । ଯେଉଁମାନେ ଆଖି ବୁଜି...ପେଟରୁ-ପ୍ରାଣ ନେଇ ଫେରି ଅସନ୍ତି ସେମାନେ କହନ୍ତି ଝିଙ୍କ ଦେଖିଛ ଝିଙ୍କ? ତା ଦେହରେ ଯେମିତି ମୁନିଆ କାଠି ସବୁ ଥାଏ—ଯଦି ରାଗିଯାଇ ତାକୁ ଛାଡ଼ିଦିଏ—ସେ ଗୁଡ଼ାକ ମଣିଷ ଦେହରେ ଫୋଡ଼ି ହୋଇଯାଏ । ଯଖ ଦେହରେ ଖାଲି ଟଙ୍କା, ଅଧୁଲି, ସିକି, ଦୋଅଣି ଅଉ ସୁନା ମୋହର, ଚିନା ଗୁଡ଼ାକ ଗୁଜିଅ ଗୁଜିଅ ମୁନିଅ ମୁନିଅ ହୋଇ ଗଞ୍ଜି ହୋଇଥାଏ । ଯା ଭାଗ୍ୟ ବାମ ତା ଦେହରେ ସେ ଗୁଡ଼ାକ ଅସି ବାଜିଲେ ଭର୍ତ୍ତି କଟିଯାଏ । ତଫାତ୍ ଏତିକି, ଝିଙ୍କର କାଟି ଅଉ ତା ପୁଚ୍ଛରେ ଯାଇ ଲାଗେ ନାହିଁ କିନ୍ତୁ ଏଇ ଯଖର ସୁନା ରୁପା କାଠି ମଣିଷକୁ ମାରି ପୁଣି ତା ଦେହରେ ଯାଇ ଲାଗିଯିବ । କିନ୍ତୁ ଯାହା ଭାଗ୍ୟ ଖୋଲିଥିବ ଅଉ ଏଇ ଯଖ ଯା ଉପରେ ପ୍ରସନ୍ନ ହୋଇଥିବ ସେ ରାଗରେ ପଖ ନଛାଡ଼ି ପ୍ରେମରେ ପଖ ଛାଡ଼ିଦିଏ । ଯେ ସୁନା ଅସରପି ଗୁଡ଼ାକ ଖାଲି ବାଞ୍ଛି ହୋଇଯାଏ । ତା ପରେ ରାତାରାତି ତାକୁ ଗୋଟେଇ ନେଇ ଘରେ ପୋତି ପକେଇବ ତ ରକ୍ଷା । ସେ ରାତି ଉପରେ ଯଦି ସକାଳର ଅଲୁଅ ପଡ଼ିଯାଏ ବା ଚଢ଼େଇ ଶବ୍ଦ ତା ଦେହରେ ବାଜିଯାଏ ସେ ଗୁଁଏ ଗୁଁଏ ଶୂନ୍ୟ ହରଣ ହୋଇଯିବ । କିମ୍ବା ଗୋଟେଇବା ବେଳେ ଲେଖକ ଛଡ଼ା ଅଉ କେହି ଦେଖିଲେ ସଙ୍ଗେ ସଙ୍ଗେ ଗୋଟିଏ ଝାଡ଼ା ଅଉ ଗୋଟିଏ ବାନ୍ତିରେ ଶେଷ । ଏ ଜାତ ୨ମାସ ୬ପକ୍ଷ, ୬ହସ୍ତା, ୭ଦିନ, ୬ଘଣ୍ଟା, ୭ଘଡ଼ି, ୬ଦଣ୍ଡ,

୬ଲକ୍ଷା, ୭ଲକ୍ଷା ଯାଏ ରହେ। ତା ପରେ ସେ ସୁନା ରୁପାକୁ ଭଙ୍ଗେଇ ତାମରେ ଲଗେଇହେବ ।

ବାଜମପୁରରେ ଜଣେ ବଡ଼ଲୋକ ମହାଜନ ଅଛନ୍ତି । ବସି ଖାଇ ସାତ ପୁରୁଷ ଯାଏ ତାଙ୍କ ଧନ ସରିବାକୁ ନାହିଁ । ଯଶ ତାଙ୍କୁ ଟଙ୍କା ଦେଇଥିଲା ବୋଲି ଅଜଣାଏ କଥା ରହିଯାଇଛି—ସାତପୁରୁଷ ଆଗେ—ଦାମୋଦର ସୁବୁଦ୍ଧି ପୁଅ ଗଦାଧର ସୁବୁଦ୍ଧି ପୁଅ ସତ୍ୟବାନ ସୁବୁଦ୍ଧି ପୁଅ କୃତ୍ତିବାସ ସୁବୁଦ୍ଧିଙ୍କ ଅମଳରେ । କିନ୍ତୁ ଗୋଟିଏ ଅଡୁଆରୁ କୃତ୍ତିବାସ ସୁବୁଦ୍ଧି ସଙ୍ଗାତ ନଦେଇଥିଲେ ଟଙ୍କା ମିଳି ନଥାନ୍ତା । ଲୋକେ କହନ୍ତି ଯଶ ଦେଖିଲା କ୍ଷଣି କୃତ୍ତିବାସ ସୁବୁଦ୍ଧି ଲମ୍ବତମ୍ବ ହୋଇ ଗୋଡ଼ତଳେ ପଡ଼ିଯାଇ କହିଲେ—ମା ଏ ମୁଣ୍ଡ ରଖ । ଯଶ କିନ୍ତୁ ନମାନେ । ପଶ ଝାଡ଼ି ଦେଲା । କିନ୍ତୁ ସେତେବେଳେ ବୋମା ଆବିଷ୍କାର ନହେଲେ ମଧ୍ୟ କୃତ୍ତିବାସ ବୋମା ବର୍ଷଣରୁ ରକ୍ଷାପାଇବାର ପ୍ରଣାଳୀ ଜାଣିଥିବାରୁ ତଳେ ଶୋଇ ପଡ଼ିଲା । ଘର ଗୁଡ଼ାକ ତା ଉପରେ ଉଡ଼ିଗଲା । ସେ ଯଶ ତାଂ ଦହରେ ବାଜିଥାନ୍ତା ତେବେ ସିନା ସେ ସବୁ ଫେରିଯାଇ ଯଶ ଦହରେ ପୁଣି ଲଗିଯାଇଥାନ୍ତା । କିନ୍ତୁ ତା ଦେହରେ ନଲାଗିବାରୁ ଘର ଗୁଡ଼ାକ ଏଣେ ତେଣେ ବିଛୁଡ଼ି ହୋଇ ପଡ଼ିଲା । ଯଶ ମହା ଝାମ୍ପା । ଗାଈଁ ଝିନା ଯାଇ କୃତ୍ତିବାସ ଦେହ ଉପରେ ବସି ତା ମୁଣ୍ଡରେ ଗଣି ଗଣି ଅଠର ଗଣ୍ଡା ପାହୁଲା । କୃତ୍ତିବାସ କହୁଥାନ୍ତି—ଅହା—ମୁଁ ସହି ପାରିଲି ନାହିଁ ମା—ଏ ତାହାର ମଙ୍ଗଳକୃତ୍ୟର ଶଙ୍ଖଧ୍ୱନି—ଯାଇଥିଲେ ଭୋଜି ମିଳିଥାନ୍ତା-ଖିରି ଅଦ୍ଧସା । ଯଶ ତ ଅନ୍ତର ବୁଝିଗଲା । ସଙ୍ଗରେ କୃତ୍ତିବାସ ମୁହଁକୁ ମେଞ୍ଚ କରି ପୋଖରୀ-ପାଣି କଲା ।

କୃତ୍ତିବାସ କିନ୍ତୁ ବହୁ ବାରେ କହିଥାଏ—'ଆହା ମା ଲୋ ମା—କି ଅପୂର୍ବ ଦୟା ତୋର । ଏ ଅମୃତକୁ ତୁ କେତେ କଷ୍ଟ ସହି ଆଣି ନଥିବୁ ! ଜନ୍ମେ ଜନ୍ମେ ମୁଁ ତୋର ଏ ଋଣ ଶୋଧ କରି-ପାରିବି ନାହିଁ । ମା ଏ କୃପାରୁ ମୋତେ ଯେପରି ତୁ କେବେ ହେଲେ ବଞ୍ଚିତ ନକରୁ ।'

ଯଶ ହାର ମାନିଗଲା । ଆଉ କୌଣସି ଉପାୟ ନପାଇ କୃତ୍ତିବାସକୁ ବର ଦେଇଗଲା । କୃତ୍ତିବାସ ବର ଜନ୍ମ ସବୁକୁ ନେଇ ଦେ—ଭୁଗ । ୨ ମାସପରେ କୁର୍ତ୍ତିଆ, ବାବୁ କୃତ୍ତିବାସ ।

ଏ ଗଳ୍ପ ବହୁତ ପୁରୁଣା ଯିଏ ଶୁଣିଛ—ତାମନ ଯେତିକି ଲୋକେଇଛୁ ସେତିକି ତାକୁ ଅଟାରେଇଛୁ । କିନ୍ତୁ ସଦାଶିବ ନାଗ୍ଦେଉ ବଡ଼ା । ଦେଶ ସ୍ୱାଧୀନ ହେଲା ପରେ ତାର ଅନେକ କଷ୍ଟ ଭବିବାର ଅଛି । କହଣ ପାଇଁ ମନ୍ତ୍ରୀ—ପ୍ରଧାନ ମନ୍ତ୍ରୀ ହେବାକୁ ହେବ । ମାତ୍ର କେମିତି ?

ରାତି ସାରା ସେ ଅନିଦ୍ରାରେ କାଟିଛି । ଲୋକେ କହନ୍ତି—ଆଲ୍ଲା ଯବ୍ ଦେତା ତୋ ଛପର ଫାଡ଼କେ ଦେତା । ମାତ୍ର ତାର ପୂର୍ବ ପୁରୁଷ, ତା ବାପ କି ଗୋସାଇ ତ—ଆଲ୍ଲାଙ୍କ ପାଇଁ ଅଳ୍ପ ବାଟ ରଖିନାହାନ୍ତି । ଛପର ଘରଠାରୁ ମଥାନ ଉଡ଼େଇ ଦେଇ ଟାଇଲ ଛପର କରିଦେଇଛନ୍ତି । ଫଳରେ ଅଲ୍ଲାମିଆଁଙ୍କୁ ହୁଏତ ନାରାଜ ହେବାକୁ ପଡ଼ୁଥିବ । ସେ କେବଳ ଉପର ଘରକୁ ଅନାଏ—କଡ଼ି ବର୍ଗାକୁ ଖୋଜେ—ଏଗୁଡ଼ାକ ସୁନା ରୁପାର କଡ଼ି ବର୍ଗା ହୋଇ ଯାନ୍ତା କି ?

କିନ୍ତୁ ହୁଏ ନାହିଁ । ସେ ବାହାରକୁ ଜାଣିପାରେ । କାଳେ ଟ୍ୱନ୍ ଟ୍ୱନ୍ ଶବ୍ଦ କେଉଁଠୁ ଶୁଭିବ । ଯଶ ଯଦି ଅସୁଥାଏ—ତେବେ ସେ କିଷ୍ଟୁସୁ ତା ଅଗକୁ ଯାଇ ଲମ୍ବ ତମ୍ବ ହି ଗୋଡ଼ତଳେ ପଡ଼ିଯିବ ।

ସେ ହଗୁ ମୁତୁ ପାଡ଼ୁ ଯାହାଙ୍କରୁ ସମ୍ଭୁଯିବ ସେ । କିନ୍ତୁ ତାର ଠଙ୍କା ଗୁହ୍ମ—କାରଣ ତାକୁ ମନ୍ତ୍ରୀ ହେବାକୁ ହେବ ।

ଝମ୍ଭ ଝମ୍ଭ ହଠାତ୍ ଦାଣ୍ଡରେ ଠନ୍ ଠନ୍ ଶବ୍ଦ ହେଲା । ଅଧରାତରେ କିଏ ? ବ୍ରିଟିଶ ସରକାର ସାଙ୍ଗରେ ତ ଆଜି ଯୁଦ୍ଧ ଲାଗିନାହିଁ ଯେ ସତ୍ୟାଗ୍ରହୀ ବାନର ସେନା ଗୁଡ଼ାକ ରାତି ଅଧରେ ଲୁଚିଛପି ଘରକୁ ଆସିବେ । ଏବେ ତ ସବୁ ଯାକ ଖୋଲା ଯୁଦ୍ଧର ନେତା ନବକିଶୋରଙ୍କ ଅଡ଼େ । ରାଧେଶ୍ୟାମଙ୍କୁ ପଚ୍ଛୁରେ କିଏ । ନବକିଶୋରଙ୍କ ଠଙ୍କା ନଥାଇ ମଧ୍ୟ ତାଙ୍କୁ ସମସ୍ତେ ମାନନ୍ତି । ରାଧେଶ୍ୟାମଙ୍କର ଲୋକହୋଇ ମଧ୍ୟ କେହି ମାନୁ ନାହାନ୍ତି । କାରଣ ସେ ଅତି ବଡ଼ଲୋକ ନୁହନ୍ତି । ସବୁ କଂଗ୍ରେସ କର୍ମୀଙ୍କୁ ଖୋଇ ଦେଇ ସେ କିଣିପାରିବେ ନାହିଁ । କିନ୍ତୁ କିଣିବା କଷ୍ଟ ନୁହେଁ—କେବଳ ଦରକାର ଠଙ୍କା—ଠଙ୍କା । ଠଙ୍କା ତା'ର ଗୁହ୍ମ । ତା'ପରେ ନବକିଶୋର ଭଳି ସାଧାସରଳିଆ ଲୋକଙ୍କୁ ଭୁଲେଇ ଦେବା କିଛି କଷ୍ଟକର କଥା ନୁହେଁ । ସେ ଟଙ୍କାରେ ନ ଭୁଲିଲେ ହଙ୍କାରେ ବଙ୍କା ହୋଇଯିବ ।

ପୁଣି ଝଣ ଝଣ ଶବ୍ଦ । ନାଃ—ଏ ଯଖ ନୁହେଁ । ଦୁଆର କୁହୁଣ୍ଡାକୁ କିଏ ହଲଉଛି । ରାଧେଶ୍ୟାମ ଦରଜା ଖୋଲିଦେଲା । ଜଣେ ଢାଙ୍ଗା, ଗୋବର୍ତ୍ତୁଳ କଳା ଲୋକ ପ୍ରବେଶ କଲେ । ସେ କିନ୍ତୁ ଯଖ ନୁହନ୍ତି । ରାଧେଶ୍ୟାମ ଆଖିର ବା କାନର ଭୁଲ ।

ତଥାପି ରାଧାଶ୍ୟାମର ଭାଗ୍ୟ—ଲୋକଟି ସଙ୍ଗେ ସଙ୍ଗେ ଜଣେ ଆତ୍ମୀୟ ବନ୍ଧୁ ପାଲଟି ଗଲା । ଖୋରଧାରୁ କାଢ଼ଇଡ଼ା ପୀରଙ୍କ ଶିରଣି ହାତରେ କିଛି "ନ୍ୟୁମ କର କହୁଛି—ମୋତେ ବିଶ୍ୱାସ କରନ୍ତୁ—ଆପଣଙ୍କ ମନ୍ତ୍ରୀହେବା ପାଇଁ ଯାହା ଯାହା ଦରକାର ମୁଁ ତାହା

ଦେବ ମୋତେ ଗୋଟିଏ ମେମ୍ବର କରିଦେବାକୁ ହେବ । ଅଉ ଟିକିଏ ବେପାରର ସୁବିଧା କରିଦେବାକୁ ହେବ ।"

"ପରୁଆ ଲେଦୁ ।"

'ଲେକିନ୍ ଶୁନ୍ ଲୁ—ଅପ୍ ଅଭି—ମନ୍ତ୍ରୀ ନହିଁ ହୋଗା ନହିଁ ହୋଗା ବୋଲ୍ କର କହିବାକୁ ହେବେ ।"

ରାଧେଶ୍ୟାମ ରାଜି ହେଲେ । ଆଗନ୍ତୁକ ବୈଷ୍ଣବ ବା କଂଗ୍ରେସକର୍ମୀ ସେବା ପାଇଁ ନଗଦ-ନାରାୟଣ ଶାଳଗ୍ରାମ ମୂର୍ତ୍ତି ଧରାଇ ଦେଇ ବାହାରିଲେ । ରାଧେଶ୍ୟାମ ସ୍ୱସ୍ତିର ନିଶ୍ୱାସ ମାରିଲେ । ମନେହେଲା ସେ ଯେମିତି ସତ ସତ ପ୍ରଧାନ ମନ୍ତ୍ରୀ ହୋଇ ଯାଉଛନ୍ତି । ପୂର୍ବ ଜନ୍ମରେ କେଉଁଠି ସେ ବର ମାଗିଥିଲେ—ମୋତେ ସ୍ୱର୍ଗରେ ଇନ୍ଦ୍ରର ପଛପଟେ ରହିବାକୁ ଦିଅ ନାହିଁ—ନର୍କର ନାଙ୍ଗୁଡ଼ିଆ ପୋକମାନଙ୍କର ଅଗ୍ରଣୀ ହେବାର ସୌଭାଗ୍ୟ ମିଳୁ । ଦେବତା ତଥାସ୍ତୁ କହି ଯାଇଥିଲେ । ଏ ଜନ୍ମରେ ଫଳ ଫଳିଲା ।

ମନେହେଲା—ମନ୍ତ୍ରୀ ତ ହେଲେ—କିନ୍ତୁ ଏ ନାମ ସବୁଦିନେ ରହିବ ତ ? ଯଦି ଖବର କାଗଜ ବାଲାମାନେ ବଦନାମ କରନ୍ତି ? ତାକୁ ଅଇନ କରି ବନ୍ଦ କରିଦେବା । ନାଃ—ସେଥିରେ ଅଧିକ ଗୋଳହେବ । ନିଜେ ଗୋଟାଏ କାଗଜ କାଢ଼ିଲେ କେବଳ ନିଜର ପ୍ରଶଂସା ଛପାଇ ଚତୁର୍ଦ୍ଦିଗରେ ବାଣ୍ଟିବାକୁ ହେବ । ବଜାର ଗଲି ଗୀତା ବାଣ୍ଟୁଥିଲେ ଚିହ୍ନା ଗ୍ରାହକ ଦେଖି—ଏବେ ତାଙ୍କର ସ୍ମୃତି ରକ୍ଷାପାଇଁ—ତାଙ୍କର ଆସ୍ଥାନରୁ ରାଧେଶ୍ୟାମ ଗୀତା ବଣ୍ଟାହେବ । ଗ୍ରାହକ ଅଗ୍ରାହକ ସମସ୍ତଙ୍କୁ । ଠିକ୍—ଠିକ୍ । କିନ୍ତୁ ଠକ୍କା !

ସହସା ପୁଣି ଝଣ ଝଣ ! କବାଟ ଖୋଲି ସିଧା ଭିତରେ ପ୍ରବେଶ—ପଗଡ଼ିବନ୍ଧା ଦାଢ଼ିଦାର ଭଦ୍ରଲୋକ । ସଙ୍ଗରେ ସାଙ୍ଗ ଓ

ସୁବ । କିନ୍ତୁ ସେ ଯେ ଓମର ଯ୍ୟୋମ ନୁହନ୍ତି କିମ୍ବା ତାଙ୍କ ଭୂତ ନୁହନ୍ତି ଏହା ବୁଝିହେଉ ଥିଲା । ମନେହେଲା ଏ ଅନ୍ୟ ଏକ ଦେବତା । କିନ୍ତୁ ସଏ କଦାପି ନୁହେଁ ।

ଅଗନ୍ତୁକ କହିଲେ—ଆପଣ ପ୍ରଧାନମନ୍ତ୍ରୀ, ଆପଣ ଇଚ୍ଛା କଲେ ସବୁ କରିପାରିବେ ।

ଗଡେଶ୍ୟାମ କହିଲେ—ମୁଁ କ'ଣ ପ୍ରଧାନ ମନ୍ତ୍ରୀ ହୋଇଗଲିଣି ?

ଅଗନ୍ତୁକ—ନିଶ୍ଚୟ ।

“କିନ୍ତୁ ତମେ ଯାହାକହୁଛ ମୁଁ ତା’ କରିପାରିବି ନାହିଁ । ଯେଉଁ ଦେବତାଙ୍କ ବରରେ ମୁଁ ମନ୍ତ୍ରୀପଦ ପାଇଛି ସେ ରାଗିଯିବେ । ମୋ’ ପଦ ବି ଯିବ ।”

“ଚିନ୍ତା ନାହିଁ । ମୁଁ ଆପଣଙ୍କୁ ବାଟ ବତାଇ ଦେବି । ଆପଣ ଗୋଟିଏ ଖବରକାଗଜ କାଢ଼ନ୍ତୁ । ସେଥିରେ ଦେବତା ଯାହା ପ୍ରକୃତରେ କରିବାକୁ ମନା କରିଛନ୍ତି ସେଇଥିକୁ କେବଳ ଆପଣ କରିପାରନ୍ତି ଓ ଏକ ବିଶେଷ ଅନୁମତି ପତ୍ର ନେଇଛନ୍ତି ବୋଲି ପ୍ରଚାର କରନ୍ତୁ ।

“ମିଥ୍ୟା ?”

ମିଥ୍ୟା ବହୁ ସଂଖ୍ୟାରେ ପ୍ରଚାରିତ ହେଲେ ସତ୍ୟ ହୋଇଯାଏ । ଦୁଇବିଯୁକ୍ତ ଯେପରି ଯୁକ୍ତହୁଏ—ଦୁଇ ମିଥ୍ୟା ସେପରି ସତ୍ୟ ହୁଏ । ଆପଣ ଦୁଇହଜାର ମିଥ୍ୟା ପ୍ରଚାର କରନ୍ତୁ ୧୦ ହଜାର ୨୦ ହଜାର କାଗଜ ଛପାଇ ବାଣ୍ଟନ୍ତୁ ସବୁ ସତ୍ୟ ହୋଇଯିବ ।”

“ବୁଝିଲି ଯେ, କିନ୍ତୁ ମୁଁ ଏ କାଗଜ ଛପାଇ ବାଣ୍ଟିବି କିପରି ? ଟଙ୍କା ?”

“ଚିନ୍ତା ନାହିଁ । ମୁଁ ତାର ବ୍ୟବସ୍ଥା କରିଦେବି ।

"ସେଇଟା ଯେ ଘୁସ ହେବ !"

"ମୁଁ କ'ଣ ଉଲ୍ଲୁହେବି—ମୁଁ ଘୁସ୍ ଦେଲେ ତ ଆପଣ ଘୁସ୍ ନେବେ । ମୁଁ ଘୁସ୍ ନଦେଇ ଯଦି ଅନ୍ୟ କୌଣସି ପ୍ରକାରରେ ଦିଏ ? ଧରନ୍ତୁ ଆପଣ ମୋର କାରଖାନାର ଦଶଲକ୍ଷ ଟଙ୍କାର ଅଂଶ ସାହାଯ୍ୟ ସ୍ୱରୂପ ସରକାରୀ କୋଷରୁ କ୍ରୟ କଲେ । ଅନ୍ୟ ଏଜେଣ୍ଟ ଆସିଥିଲେ ଲକ୍ଷେ ଟଙ୍କା ଆମେ କମିସନ ଦେଇଥାନ୍ତୁ । ସେ ଲକ୍ଷେଟଙ୍କା ଆମେ କାଗଜକୁ ଦେଇ ଦେବୁ । ଏଠାତ ଆପଣଙ୍କୁ ଦେବା ହେଲା ନାହିଁ । ଅଥ ଏଟଙ୍କା ଆମେ କି ଦେଲୁ ନାହିଁ ।"

"ବାଃ ବାଃ—ବେଶ୍ ଚମତ୍କାର ବୁଦ୍ଧି । ଅଚ୍ଛା ଆସନ୍ତୁ ।"

ଭଦ୍ରଲୋକ ଗଲେ--ରାଧେଶ୍ୟାମ ପୁଣି ଚିନ୍ତା ମଗ୍ନ । ତା'ପରେ—ତା'ପରେ ? ମିଥ୍ୟାକୁ ସିନା ଭଦ୍ରକୁଳର ସ୍ୱଭାବ ସତ୍ୟ ବୋଲି ଜାଣିଲେ । ଅଭଦ୍ରକୁଳର ଦେବତାଙ୍କପାଇଁ ଦେବ ଭାଷାର ଦରକାର । ହେ ଦେବତା ତମେ ଦୟା କର ।

ପୁଣି ଦ୍ୱାରରେ ଠକ୍ ଠକ ।

ଜଣେ ବିଶିଷ୍ଟ ଲୋକ—ଧନୀ—ଅଥଚ ମୋଟା ନୁହନ୍ତି । ବୃଦ୍ଧ ପ୍ରବିଷ୍ଟ ହେଲେ ।

"ରାମ୍ ରାମ୍—ଆପଣ କୁଆଡ଼େ ? ଆପଣଙ୍କ ଗୋବଧ ବନ୍ଦ ଆନ୍ଦୋଳନ କେତେଦୂର ଗଲା ।"

"ସବୁ ଠିକ୍ ହୋଇଛି । କିନ୍ତୁ ଏଥି ହିନ୍ଦୁ ହିନ୍ଦୁ ଭିତରେ ଗୋଳମାଳ । ଦଳେ କହୁଛନ୍ତି—ଏ ଆନ୍ଦୋଳନ ଅନ୍ୟାୟ । ଏଭଳି ଫୁଟ୍—ଭେଦାଭେଦରେ କି କାମ ହେବ ?"

"ଭେଦ ତୁଟିବାର ଉପାୟ ଭାବୁଛନ୍ତି ?"

"ଭାବୁଛି । ସବୁ ଆପଣଙ୍କ ହାତରେ ।"

"ମୁଁ ତ ମନ୍ତ୍ରିମଣ୍ଡଳ ଓ ତାହିଁ ଭିତରେ ସେଇ ଅବସ୍ଥା ଦେଖୁଛି । ଏ ଛେଦ ଭେଦକୁ ଯୋଡ଼ିବାର ଉପାୟ ମୋ ହାତରେ ଥିଲେ—"

"ଆଜ୍ଞା ମୁଁ ବତାଇ ଦେଉଛି । ଆପଣ ଜାଣନ୍ତି, ସିମେଣ୍ଟ ଗୋଟାଏ ପଦାର୍ଥ—ଯେ ଶକ୍ତ ଇଟା ପଥରକୁ ଯୋଡ଼ିଦିଏ । ଯେତେ ବଡ଼ ଫାଟୁଆ ବାଦୀ ବିବାଦୀ ହୁଅନ୍ତୁ—ଏଇ ସିମେଣ୍ଟ ନିଶ୍ଚେ ଯୋଡ଼ି ଦେବ । ମୁଁ ଏ ଦେଶରେ ସିମେଣ୍ଟ ତିଆରି କରି ସବୁ ଭେଦ ଦୂର କରିବି । ଆପଣଙ୍କ ଅନୁମତି ଲୋଡ଼ା ।"

"କିନ୍ତୁ ସିମେଣ୍ଟ ଯେ ଭେଦ ଦୂର କରିପାରେ ଏ କଥା ଲୋକେ ବିଶ୍ୱାସ କରିବେ କି ? ଏଥିପାଇଁ ଖବର-କାଗଜ ଲୋଡ଼ା । ଦେବ ଭାଷାରେ କିନ୍ତୁ ।"

"ଠିକ୍ କଥା । ନୂଆ କାଗଜ କାଢ଼ନ୍ତୁ ।"

"ଟଙ୍କା ?"

"ଟଙ୍କା କଥା ଭାବନ୍ତୁ ନାହିଁ । ଆପଣ ଏହି ଟଙ୍କା ନିଅନ୍ତୁ—ଦେଶକୁ ଏକ କାଗଜ ଦାନ କରନ୍ତୁ ।"

"କିନ୍ତୁ—"

"କିନ୍ତୁ କିଛି ନୁହେଁ— ଦେଶକେ ବାସ୍ତେ ।"

ଭଦ୍ରଲୋକ ଚାଲିଗଲେ । କିଛି ସମୟ ପରେ ହଡ଼ବଡ଼କା ରାଧେଶ୍ୟାମଙ୍କ ବିଶ୍ୱସ୍ତ ମନ୍ତ୍ରୀ ସୁରଚନ୍ଦ୍ର ସେନ ସଦଳେ ବଳେ ଆସି ପଡ଼ିଲେ—"ସ୍ୱାମୀ ସ୍ୱାମୀ ! କଣ ହେଲା ଆପଣଙ୍କର ? କିଛି ହୋଇ ନାହିଁ ତ ?"

ରାଧେଶ୍ୟାମ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ । "କଣ ? ଏତେ ରାତିରେ ତୁମେ କୁଆଡ଼େ ?"

ସୁରଚନ୍ଦ୍ର ସେନ କହିଲେ—"ପଖ—ପଖ ପଖ !"

ରାଧେଶ୍ୟାମ ଆତୁର ଆଶ୍ଚର୍ଯ୍ୟ ହୋଇ କହିଲେ—"ସୁରଚନ୍ଦ୍ର, —କି ଯକ୍ଷ ଓ ?" ସମସ୍ତେ କେବଳ ହାବଳ ଖାଇଗଲେ । ବୀରଭଦ୍ରପୁର ଗାଁ ହା ଉଠିଆସିଲ । କଥା କ'ଣ—କଥା କ'ଣ ?

ସୁରସେନ କହିଲ—"ଆମେ ଦେଖିଛୁ ଗୋଟାଏ ଯକ୍ଷ ରାଧେଶ୍ୟାମଙ୍କ ଘରକୁ ତିନି ଥର ଯାଇଛି ତିନି ଥର ଆସିଛି ; ଭିତରେ ଗାଁ ଗାଁ ଶବ୍ଦ ଶୁଭୁଥାଏ । ଆମେ ସାହସ କରି ଆସି ପାରିଲୁ ନାହିଁ । କିନ୍ତୁ ତମେ ଧନ୍ୟ ରାଧେଶ୍ୟାମ—ତୁମେ ଯା ଯକ୍ଷକୁ ଘଉଡ଼େଇ ଦେଇ ପାରିଲ ! ତମେଇ ଏକା ଏ ଦେଶର ରାଜ୍ୟ ଭାର ନେବାର ଯୋଗ୍ୟ ।"

ଏତିକିବେଳେ ଜଣେ କହିଲ—"ଇ—ହିଁ—ଏଠି ବଡ଼ ଗନ୍ଧ —ବୋଧହୁଏ ଯକ୍ଷ ହଗିଦେଇ ଯାଇଛି । ଇ—ହିଁ ।"

ରାଧେଶ୍ୟାମ କହିଲେ—"ତମେ କ'ଣ ପାଗଳ ହେଲ—ଏଠିକି ବଡ଼ ବଡ଼ ଲୋକମାନେ ଅତର ଲଗାଇ ଆସିଥିଲେ, ତାର ମହକ ରହିଛି ।"

"ମିଛକଥା" ବୋଲି ସମସ୍ତେ ରଡ଼ି ଛାଡ଼ିଲେ ।

"ହେଇଟି ଦେଖ—ମୋ ପାଖରେ ସେମାନଙ୍କର ଭିଜିଟିଂ କାର୍ଡ଼ ରହିଛି—ପ୍ରଥମ ଜଣଙ୍କ ନାମ ମିଷ୍ଟର ବେଜୋଡ଼ିଆ, ଦ୍ୱିତୀୟ ଜଣକ ନାମ ମିଷ୍ଟର ଗୁମାନ ସିଂ ଓ ତୃତୀୟ ଜଣକ ରେଡ଼ିମିଆଁ । ଏଇମାନେ ଶେଷଯାକେ ମୋ ପାଖେ ଥିଲେ । ଆପଣମାନେ ଯକ୍ଷ ଦେଖିଲେ କେଉଁଠୁ ?"

କିନ୍ତୁ ରାଧେଶ୍ୟାମଙ୍କ କଥା କେହି ବିଶ୍ୱାସ କଲେ ନାହିଁ । ସମସ୍ତେ କହିଲେ ରାଧେଶ୍ୟାମଙ୍କୁ ଯକ୍ଷ ପ୍ରସନ୍ନ ।

ଗୁହ୍ନୁଁ ଗୁହ୍ନୁଁ, ରାଧେଶ୍ୟାମ ମନ୍ତ୍ରୀ ହେଲେ; କାଗଜ ବାହାରିଲ । ତଥାପି ସେ ଅସ୍ୱୀକାର କରନ୍ତି ଯେ ଯକ୍ଷ ସେ ଦେଖି-

ନାହାନ୍ତି । ଯିଏ ସେଦିନ ରାତିରେ ଆସିଥିଲେ ସେ ମଣିଷ । ବାସନାଟା ଗୁହର ବାସନା ନୁହେଁ—ଅତରର । ହୁଏତ ସେଦିନ ଯା ଖାଇଥିଲେ ତାହା ଗୁହ ମଧ୍ୟ ନୁହେଁ, ପରେ ହେଲେ ହୋଇଥିବ ।

କିନ୍ତୁ ଟୁଭୁଖା ଲୋକେ କହନ୍ତି ରାଧେଶ୍ୟାମ ଆଜି ଯେ ବଡ଼ ଲୋକ—ତାର କାରଣ ରାଧେଶ୍ୟାମଙ୍କୁ ଯକ୍ଷ ପ୍ରସନ୍ନ ହୋଇଥିଲା !

ଗୁଣିଆଙ୍କ ମତରେ ଏ ଯକ୍ଷ ମିଛ ନୁହେଁ । ଅନେକ ଦିନ ଟଙ୍କା ମାଟିରେ ପୋତା ହୋଇ ରହିଲେ ସେ ଗୋଟାଏ ଜୀବ ପାଇଥାଏ । ଆତ୍ମା ଲାଭ କରେ । ଟଙ୍କାର ଗୁଣ ଯେମିତି ଶାସନ କରିବା—ପାପ କରିବା—ପୁଣି ପାପ ପାଇଁ ପ୍ରାୟଶ୍ଚିତ୍ତ କରିବା—ଏ ପ୍ରାଣବାନ ମୁଣ୍ଡିର ସ୍ୱଭାବ ମଧ୍ୟ ଠିକ୍ ସେଇପରି । ସଭ୍ୟ ଯୁଗରେ ଏଇ ଯକ୍ଷଙ୍କ ସଂଖ୍ୟା ବଢ଼ି ଚାଲିଛି ।

# ସ୍ତ୍ରୀ ଚକ୍ର

ଭାଗ୍ୟଚକ୍ର ଘୂରୁଛି—ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନିଚ ସୁଖାନି ଚ । ଏ କଥା ଦିନେ କେଉଁ ମୋଟା ବୁଢ଼ିଆ ଋଷି ଲେଖିଥିଲେ । ସେ ନିତାନ୍ତ ସ୍ତ୍ରୈଣ ଥିଲେ ବୋଲି ସାହସ କରି ସତ କଥାଟା ଲେଖି ନପାରି ଘୋଡ଼େଇ କରି ଲେଖିଛନ୍ତି । ଯେମିତି ପ୍ରାଚୀନ ଓଡ଼ିଆ କବିମାନେ ନିଜର କାମ ଲାଳସାଟାକୁ ପ୍ରକାଶ କରିବାକୁ ଉତ୍ର ରାଧା କୃଷ୍ଣଙ୍କୁ ଟାଣି ଓଟାରି ଲଙ୍ଗଳା କରି ଠିଆ କରନ୍ତି, ସେମିତି । ପ୍ରକୃତରେ ଋଷିଙ୍କର ଲେଖିବାର ଥିଲା—ଚକ୍ରବତ୍ ପରିଘୂର୍ଣ୍ଣନ୍ତି ନାରୀ ନରପତଶ୍ଚୈବ । ଅର୍ଥାତ୍ ରଜା ଓ ନାରୀମାନେ ଚକ୍ରବତ୍ ଘୂରୁଥାନ୍ତି । ଆଜି ଯେ ରାଜେନ୍ଦ୍ର ସିନେ କାଲି ସେ ଫକୀର । ଆଜି ସେ ବାଣିଜ୍ୟ ମନ୍ତ୍ରୀ କାଲି ସେ ବିତାଡ଼ିତ ହୋଇ ବ୍ୟବସାୟୀ ଫନ୍ଦକାର । ଆଜି ଯେ ଓଡ଼ିଶା ମନ୍ତ୍ରୀ ଗାଦିରୁ ବିତାଡ଼ିତ କାଲି ସେ କେନ୍ଦ୍ରରେ ଉପମନ୍ତ୍ରୀ ।

ଆଜିକାଲି ଯୁଗରେ ରାଜା ଲେଡ଼ା ହେବାରୁ ନରପତି ବୋଇଲେ ବୁଝାଏ—ମନ୍ତ୍ରୀ । ଏମାନେ ନରମାନଙ୍କର ପତି, ନାରୀମାନଙ୍କର ପତି ତଥା ନରମାନେ ପତି ବା ଭଙ୍ଗ ପିଇଲେ ଯେଉଁ ଅବସ୍ଥା ପ୍ରାପ୍ତ ହୁଅନ୍ତି—ଭୋଟଦାତାମାନେ ସେଇ ଅବସ୍ଥାରେ ଭୋଟ ଦିଅନ୍ତି ବୋଲି ଏମାନେ ନରପତି । ବିଶେଷତଃ ଏମାନେ ଆସନରେ ବସିଲାକ୍ଷଣି ମୋଟର ଜାଣି ଚଢ଼ନ୍ତି । ଓଡ଼ିଶାର ପ୍ରତ୍ୟେକ ଉପମନ୍ତ୍ରୀ ମଧ୍ୟ ମଟର ଜାଣି ଚଢ଼ିଲେଣି । ଏମାନେ ମଟର ଚଢ଼ି ଘୂରିବା ହେତୁ—ଏମାନଙ୍କୁ କୁହାଯିବ—ଚକ୍ରବତ୍ ପରିଘୂର୍ଣ୍ଣନ୍ତି (ନାରୀ) ନରପତି-ଶ୍ରେଣୀର ।

ବର୍ତ୍ତମାନ ନାରୀମାନେ କିପରି ପରିଘୂର୍ଣ୍ଣନ୍ତି ତାର ବିଚାର କରିବା । କେବଳ ଆମର ମନ୍ତ୍ରୀ, ସେକ୍ରେଟେରୀ, ଲାଟ ବା ପୁଲିସ ସାହେବ, ଜିଲ୍ଲା ହାକିମଙ୍କ ଝିଅ, ମାଇପ, ଭଉଣୀମାନେ ଆଜିକାଲି ମଟର ଚଳାଇ ଚକ୍ରବତ୍ ଅର୍ଥାତ୍ ମଟର ଚକା ଓ ମଟର ଷ୍ଟିଅରିଂ ଘୂରାଇ ଚକ୍ରପରି ଏକ୍ଷଣି ଏଠି ତ ପରକ୍ଷଣରେ ସେଠି ପରିଘୂର୍ଣ୍ଣନ୍ତି ତାହା ନୁହେଁ—ଆମ ପୁରାଣରେ ମଧ୍ୟ ଏହାର ଉଦାହରଣ ଭୂରି ଭୂରି ।

ଶ୍ରୀକୃଷ୍ଣ ଯେତେବେଳେ ନରକାସୁରକୁ ମାରିବାକୁ ଗଲେ ସେତେବେଳେ ତାଙ୍କ ସତ୍ୟଭାମା ଶ୍ରୀକୃଷ୍ଣଙ୍କର ରଥର ସାରଥି ହୋଇ-ଥିଲେ । ଦଶରଥ ଦେବତାମାନଙ୍କ ଡାକରାରେ ଅସୁରଙ୍କ ସହ ଯୁଦ୍ଧ କଲାବେଳେ କୈକେୟୀ ଯେ ରଥ ଚଳାଉଥିଲେ ତା ନୁହେଁ—ତାଙ୍କ ହାତକୁ ନେଇ ଭଙ୍ଗା ଅଖ ଜାଗାରେ ଭରିଦେଇ ଯେଉଁ ସର୍କସ ଦେଖାଇଥିଲେ ତା ଫଳରେ ରାମଚନ୍ଦ୍ରଙ୍କର ଭାଗ୍ୟଚକ୍ର ଘୂରିଗଲା । ନାରୀଚକ୍ର ଏତେ ବଳବାନ୍ ଯେ ଖାଲି ରଥ ନୁହେଁ – ଏହି ଚକ୍ରର

ଚରମ ବା ଶେଷ—ଅର୍ଥାତ୍ ଚନ୍ଦ୍ରାନ୍ତ । ନାଁଟା ଚନ୍ଦ୍ର ନୁହେଁ, ଚନ୍ଦ୍ରାନ୍ତ, ଅର୍ଥାତ୍ ଚନ୍ଦ୍ରର ଶେଷ ।

ସେଥିପାଇଁ ମୁଁ ମନା କଲେ ମଧ୍ୟ ସୁଧାର ମା' ତାଙ୍କୁ ଅନୁମତି ଦେଲେ ଡ୍ରାଇଭିଂ ଶିଖିବା ପାଇଁ । ସୁଧାର ଟିକିଏ ନାଲି ପତକା ନିଶା ଥାଏ । ସେଥିପାଇଁ ମୋର ଡର ହୁଏ, ଡ୍ରାଇଭିଂ କରୁ କରୁ ଡ୍ରାଇଭରିଆଣୀ ହୋଇ ନ ଯାଉ । କାରଣ ଏବେ ଡ୍ରାଇଭରମାନଙ୍କୁ ନେଇ କମ୍ୟୁନିଷ୍ଟମାନେ ଲେବର ଇଉନିୟନ ବା ଆଉ ଏକ ସର୍ବହରା ଦଳ ଗଠନ କରି ଚାଲିଛନ୍ତି । ମାତ୍ର ସୁଧାର ମା'ଙ୍କ ମତରେ ବର ବଜାରରେ ଦର ଓ ଗୃହିଣୀ ବଢ଼ିଯିବ । ପାଠ ପଢ଼େଇଲି, ଗୀତ ଶିଖାଇଲି, ନାଚ ନଚେଇଲି, ମିଲିଟାରୀ ଟ୍ରେନିଂ ବି ଦେଲି, ବାକି ଡ୍ରାଇଭିଂଟା ନ ଦେବା ବା କାହିଁକି ? ଏଟା ତାଙ୍କ ମା'ଙ୍କ ମତ କିନ୍ତୁ ମୁଁ ପୁରୁଷ ହୋଇଥିବାରୁ ଟିକିଏ ପୁରୁଷଙ୍କ ପକ୍ଷନେବା ସ୍ୱାଭାବିକ । ମୁଁ କହିଲି—ପ୍ରିୟେ, ପାଠ ପଢ଼ାଇଥିଲି ବୋଲି ସେ ତ କେତେ ଟୋକାଙ୍କୁ ପାଠ ପଢ଼େଇ ଗାଉଁଲି, ଗୀତ ଶିଖାଇଥିଲି ବୋଲି ତ ଦିନକେ ତାର ଦଶ ସ୍ୱର ଦଶ ଫ୍ରେଣ୍ଡଙ୍କ ପାଖରେ, ନାଚ ଶିଖାଇଥିଲି ବୋଲି ତ ସହସ୍ର ମୁଦ୍ରା ଦେଖାଇ ଦେଉଛନ୍ତି । ମିଲିଟାରୀ ଶିଖିତ କେତେ ଗାଉଁଲି ଟାର୍ଗେଟ୍ କଲାଣି । ବାକି ଡ୍ରାଇଭିଂ ଶିଖିଲେ ଆକ୍ସିଡେଣ୍ଟ ଉପରେ ଆକ୍ସିଡେଣ୍ଟ ହବ—ସବୁ ଟୋକା ଯାଇ ହସପାତାଲରେ ପଡ଼ିବେ । କିନ୍ତୁ ମୁଁ କଣ କରିବି—ଗୃହିଣୀଙ୍କର ଜିଗର । ମଣିଷର ସ୍ୱଭାବ, ନିଜ ଜୀବନରେ ସେ ଯାହା କରି ପାରି ନ ଥାଏ—ଛୁଆ ପିଲାଙ୍କ ଦ୍ୱାରା ତାହା ହବାର ଦେଖିଲେ ସେ ଖୁସି ହୁଏ । ଗୃହିଣୀ ୧୪ବର୍ଷରେ ମୋତେ ବାଡ଼ ହୋଇଛନ୍ତି; ତେଣୁ ପାଠ ପଢ଼ାଇବା, ସ୍ୱର ଶୁଣାଇବା, ମୁଦ୍ରା ଦେଖାଇବା, ଟାରଗେଟ ପ୍ରାକ୍ଟିସ୍ କରିବା ବା ଆକ୍ସିଡେଣ୍ଟ ଘଟାଇବାର ସାଧ ବୋଧହୁଏ ପ୍ରଚଣ୍ଡ ରହିଯାଇଥିଲା । ହେଉଁ ହେଉଁ

ତାହା ମେଣ୍ଟିଗଲେ ତାଙ୍କର ଉଗ୍ରଚଣ୍ଡୀ ରୂପ ଦୂର ହୋଇ—ଶାନ୍ତ ରୂପେଣ ସଂସ୍ଥିତା ହେବେ ଅବା ! ତେଣୁ ମୁଁ ତାଙ୍କ ଫାଇଲ ଉପରେ ଆମ ମନ୍ତ୍ରୀ ଓ ସେକ୍ରେଟେରୀଙ୍କ ଅନୁକରଣରେ କେବଳ ଆପ୍ରୁଭଡ୍ ଏଗ୍ରିଡ୍ ଲେଖି ଦେଇ ଛୁଟି ଦିଏ ।

ସୁଧାର ଭାଇ କହେ—ବାବା ! ଆସ୍ତାମାନେ ଗାଡ଼ି ଚଳାନ୍ତି (ପେରେମ୍ବୁଲେଟର)—ମୋ ନାନୀ କ'ଣ କାହାର ଆସ୍ତା ହେବ ? ସୁଧା ସାନ ଭଉଣୀ ମିନି କହେ ନାନୀ, ନର୍ସମାନେ ଟଣା ଖଟିଆରେ ପକେଇ ଅପରେସନ ଘରୁ କେତେ ରୋଗୀଙ୍କୁ ଆଣନ୍ତି । ଚାକର ଧାନା କହିଲା—ଦେଖ, ବାରମଜାବାଲା ବି ଭାଗ୍ୟଚକ୍ର ଘୂରାଇ ମିଠାଇ ବିକିକରେ ଟଣାଗାଡ଼ି ଟାଣି । ମାଳୀ କହିଲା—ରିକ୍‌ସାବାଲା ତ ଚଲଉଛନ୍ତି—କଚୁଆନ୍ ଚଲଉଛନ୍ତି—ସାନ ମା ଆମର ସେ ସବୁ ନ କରନ୍ତୁ ।

ସୁଧା କହିଲା—ବାବା, ଗାଡ଼ି ଚଳେଇବା ଏକା ପୁରୁଷର କାମ ନୁହେଁ । ସୂର୍ଯ୍ୟ ତାର ରଥ ଚଳାଏ । ମାତ୍ର ଚନ୍ଦ୍ରମା ତା ରଥ ନ ଘୂରେଇଲେ ଅନ୍ଧାର ରାତି ୨୮ ଦିନଯାକ ହୋଇଯାଉଥାନ୍ତା । ତେଣୁ ସମାଜରେ ଜହ୍ନରାତି ଆଣିବାପାଇଁ ଏ ନାରୀଜାତି ଉଠି ଆଜି ଡ୍ରାଇଭିଂ କରନ୍ତୁ ।

ମୁଁ ପଚାରିଲି—ଶିଖାଇବ କିଏ ?

ସୁଧା କହିଲା—ମୋର ବନ୍ଧୁ ଫ୍ରେଣ୍ଡ୍ କାଲେ ଭ୍ରମର । ତାଙ୍କର କାର୍ ଅଛି । ସେ ରାଜି ।

ମୁଁ କହିଲି, ଆଚ୍ଛା ତାଙ୍କୁ ଡାକଦେ ମୋ ପାଖକୁ ।

ଝିଅଙ୍କୁ ବଦାଦେଇ ଓଡ଼ିଆ ପୁଅ, ବଙ୍ଗଳା ନାମଧାରକ କାଲେ ଭ୍ରମରଙ୍କୁ ଆମ୍ଭେ ସାକ୍ଷାତ ଦେଲୁ । ଦେଖିବାକୁ କାଳୁ ସେ ଗୋରା । ଯାହାହେଉ, କହିଲି—ବାବୁ, ତୁମେ ପ୍ରଥମେ ସୁଧାକୁ

ଷ୍ଟିଅରିଂ ଧରି ଦେଖାଇବାବେଳେ ନିଜେ ଡ୍ରାଇଭର ସିଟରେ ବସି ତାଙ୍କୁ ପାଖରେ ବସାଇ ହାତ ବଢ଼ାଇ ଧରିବାକୁ କହିବ ତ ?

ଭ୍ରମର କହିଲା—ହଁ, ପ୍ରଥମେ ତା ନ କଲେ ସେ କଣ୍ଟ୍ରୋଲ କରିବ କିମିତି ?

ମୁଁ—କିନ୍ତୁ ତା ଡାହାଣ କାଖ ତମ କାନ୍ଧ ଉପରେ ବାଜିବ ଯେ !

ଭ୍ରମର—ତେବେ ସେ ତାଙ୍କ ଡାହାଣ ହାତ ମୋ ପଛପଟେ ବୁଲାଇ ନେବେ ।

ମୁଁ—ଉହୁଁ ଃ ସେବ ସୁବିଧାଜନକ ନୁହେଁ ।

ଭ୍ରମର—ତେବେ ସେ ଷ୍ଟିଅରିଂ ଧରନ୍ତୁ, ମୁଁ ପାଖରେ ବସି ଷ୍ଟିଅରିଂ ଉପରେ ହାତ ପକାଇଥିବ ତାଙ୍କ ପଛଆଡ଼େ ଡାହାଣ ହାତ ବୁଲାଇ—ଚଳିବ ନାହିଁ ?

ମୁଁ—ହଁ ଚଳିବ—ସବୁ ଚଳିବ ଯେ, ମାତ୍ର ମୁଁ ଗୋଟାଏ କଥା କହୁଥିଲି କି—ଡ୍ରାଇଭିଂ ଶିଖାଇବା ଆଗରୁ ତମେ ତାଙ୍କୁ ତମ ଜୀବନ ଷ୍ଟ୍ରିଡ଼ବେକରର ଏଇ ବ୍ରେକ୍‌ଲେଶ୍ ଅବସ୍ଥାରେ ଡ୍ରାଇଭର ସ୍ଥବରେ ଆପଏଣ୍ଟମେଣ୍ଟ୍ ଦେଇ ଦିଅ ।

ଭ୍ରମର—ଆଜ୍ଞା, ସେଥିପାଇଁ ବ ତ ତାଲିମ ଦରକାର ।

ମୁଁ—ତାଲିମ ସେ ପାଇଛି ।

ଭ୍ରମର—ପରୀକ୍ଷା ତ ଦରକାର ?

ମୁଁ—ପରୀକ୍ଷା କିଏ କରିବ ?

ଭ୍ରମର—ବାପା ବୋଉ ।

ମୁଁ—ଆଚ୍ଛା ମୁଁ ଖବର ଦେଉଛି—ତମେ ଚଳାଅ ଗାଡ଼ି, —ମାତ୍ର ବ କେୟାର ଫୁଲ୍, ସ୍ପୀଡ୍ ବେଶି ଦେବ ନାହିଁ ।

ତା ପରେ ଦୁହେଁ ଡ୍ରାଇଭିଂ କରିବାକୁ ଲାଗିଲେ । ଝିଅ କହେ ଶିଖି ସାରିଲାଣି । ଛମାସ ଗଲା, ବର୍ଷେ ବି ଗଲା, ପଚାରିଲି— ଝିଅ, ମୋତେ ଥରେ ବୁଲେଇ ନେଉନୁ ?

ଝିଅ କହିଲା—ବାପା ଆଉ ଟିକିଏ ବାକି ଅଛି ।

ପଚାରିଲି—କଣ ବାକି ?

ଝିଅ—କମ୍ପାନୀକୁ କାଲେ ଭ୍ରମର ଲେଖିଛି—ଗାର୍ଲ ଫ୍ରେଣ୍ଡ-ପାଇଁ ଗୋଟେ ନୂଆ ମଡ଼ର ପଠାଇବ—ଯେଉଁଥିରେ କାଉଣ୍ଟ୍ରୋଲ, ଫାଷ୍ଟ ଗିଅର, ସେକଣ୍ଡ ଗିଅର, ଟପ୍ ଗିଅର ସବୁ ଅଲଗା ଅଲଗା ଥିବ । କାରଣ ଗୋଟାଏ ଡାଙ୍ଗରେ ଏତେଗୁଡ଼ାଏ ଗିଅର ଥିବାରୁ କଉଟା କ'ଣ ସବୁ ଗୋଳମାଳ ହୋଇଯାଉଛି ।

ମୁଁ—ତାହାହେଲେ ତୁ ଏ ଯାଏ ଗାଡ଼ି ଚଳାଇନୁ ?

ଝିଅ—ହଁ ବାପା । ମୋ କଲେଜ ସାଥିମାନେ ମୋ ନାଁ ଦେଲେଣି 'ଫ୍ରଣ୍ଟିୟର ମେଲ୍ ?'

ମୁଁ—'ଫ୍ରଣ୍ଟିୟର ମେଲ' ନା 'ତୁଫାନ ଏକସପ୍ରେସ ?'

ଝିଅ—ଅଚ୍ଛା, କାଲି ଆପଣ ଦେଖିବେ ।

ତହିଁ ଆରଦିନ କାଲେଭ୍ରମର ଓ ସେ ଦୁହେଁ ମୋତେ ମୋଟରରେ ବୁଲାଇ ନେଲେ । ଝିଅ କହିଲା—ବାପା, ଭ୍ରମର ଷ୍ଟାର୍ଟ କରି ମୋ:ଶନ୍ ଦେଉ—ମୁଁ ଚଳାଇ ନେବି ତେଣିକି ! ଷ୍ଟାର୍ଟ ଦେବା ଟିକିଏ କଷ୍ଟ—ମୁଁ ସେଇଟା ଶିଖିବାକୁ ଭୁଲି ଯାଇଛି । କାରଣ ସବୁଦିନେ ଭ୍ରମର ମୋତେ କଷ୍ଟ ହେବ ବୋଲି ଷ୍ଟାର୍ଟ କରିଦିଏ । କାଲି ମୁଁ ଆଉ କାହା କଥା ନ ଶୁଣି ଷ୍ଟାର୍ଟ ଦେବି ।

ଭ୍ରମର ସେଲ୍ଫ ଷ୍ଟାର୍ଟ ଦେଇ ଗାଡ଼ି ଛାଡ଼ିଲା । ତାକେ ବାଟ ଆଗେଇ ଗଲୁଁ । ମୁଁ କହିଲି—ଝିଅ, ଏଥର ଚଲା ! ଝିଅ ମୋର

କାନ୍ଧ ଉପରେ ହାତ ପକାଇ ଖାଲି ଷ୍ଟିଅରିଂ ଧରିଲି । ସେତିକିବେଳେ ପାଞ୍ଚ ମିନିଟ୍ ଯାଇ ନାହିଁ—ଧଡ଼ାସ୍ ।

ଗୋଟାଏ ଆକ୍ସିଡାଣ୍ଟ ! ସାଙ୍ଗେ ସାଙ୍ଗେ ଆହତ ଲୋକଟିକୁ ହାସପାତାଳ ନେଇଗଲୁଁ । ପୁଲିସ ପଚାରିଲା—କିଏ ଗାଡ଼ି ଚଳାଉଥିଲା ? ଦେଖିଲି, ସୁଧା ବେଶ୍ ଏକସ୍‌ପାର୍ଟ ଢୋକୀ—ଆଙ୍ଗୁଳି ଦେଖାଇ ଦେଲା କାଲେ ଭମର ଆଡ଼େ । କାଲେ ଭମରକୁ ପୁଲିସ ହାଜତ ନେଇଗଲା । ଗାଡ଼ି ଜବତ । ଏଥର ସୁଧାର ମଟର ଚଳା ବଦଳରେ ଦିନରେ ଦଶଥର ହାସପାତାଳକୁ ଗତି । ବଡ଼ କରୁଣାମୟୀ ଝିଅ ମୋର । ଜଖମ ହୋଇଥିବା ଲୋକଟି ମଧ ତାର ପଢ଼ା ସାଙ୍ଗ । ମୁଁ ଦିନେ ଯାଇ ପହଞ୍ଚିବାବେଳକୁ କ୍ୟାବିନ ଭିତରେ ସୁଧା ରୋଗୀ ମୁହଁ ପାଖରେ ମୁହଁ ଲଗାଇ ପଚାରୁଛି—ତମେ କାହିଁକି ସେ ଦିନ ମଟର ଆଗକୁ ଦଉଡ଼ି ଆସିଲ କହିଲ ?

ରୋଗୀ—ମରିବାପାଇଁ ।

ସୁଧା—କାହିଁକି ମରିବାକୁ ମନ ହେଉଥିଲା ?

ରୋଗୀ—ତମେ କାଲେଭମରକୁ ଭଲ ପାଉଥିଲ ।

ସୁଧା—ଛି,ଛି,ଏଡ଼ିକି ଗଧ ? ତାର ମଟର ଥିଲା ବୋଲି—ଖାଲି ଚଢ଼ିବାପାଇଁ ଫିକର କରିଥିଲି ନା—ନହେଲେ ଭଲ ପାଏଁ ମୁଁ ଜଣକୁ ।

ରୋଗୀ—ସେ କିଏ ?

ସୁଧା ତା ଓଠ ଉପରେ ଚୁମାଟାଏ ଲଗାଇ ଦେଲା । ମୁଁ ସମ୍ଭାଳି ନ ପାରି ଘର ଭିତରକୁ ପଶିଗଲି ।

ସୁଧା ବିବ୍ରତ ହୋଇ କହିଲା—ବାପା, କଣିକ ଓ ମୁଁ ଦୁହେଁ ଆପଣଙ୍କ ଆଶୀର୍ବାଦ ଗୁହୁଁଛୁ ।

ମୁଁ ଅଗତ୍ୟା କହିଲି—ହଁ ହଁ—ବଙ୍ଗଳା ସାହିତ୍ୟ ଠାରୁ ହିନ୍ଦି ସାହିତ୍ୟ ଭଲ । ଭମର ଠାରୁ କିଶନ୍ ଭଲ ।

ଘରକୁ ଆସି ଦେଖିଲି—କେସ୍‌ରେ ଜରିମାନା ଦେଇ କାଲେ ଭମର ମୋ ବୈଠକଖାନାରେ । ପଚାରିଲି—କିମର୍ଥେ ?

ଭମର ବାପା କହିଲେ—ତାରକଣ୍ଠା ଆସନ୍ତା ମାର୍ଗଶୀରରେ ଧାର୍ଯ୍ୟ କରିବାକୁ ।

ମୁଁ କହିଲି—ବାପା, ଭାଗ୍ୟଚକ୍ର ଘୂରେ । ପୁରୁଷସ୍ୟ ଭାଗ୍ୟ—ସ୍ତ୍ରୀୟାଶ୍ଚ ଚରିତ୍ର ସବୁବେଳେ ଘୂରେ—ଦେବାଃ ନ ଜାଣନ୍ତି କୁତଃ ମନୁଷ୍ୟାଃ ।

# ଗୋଟିକଯାକ ତୁଳସୀ

ଯାହା କହିବ ସତ କହିବ--ମିଛ କହିବ ନାହିଁ—ଧର୍ମ ଅଦାଲତରେ ମିଛ କହିବ ନାହିଁ । ମିଛ କହିଲେ ଆଖି ଫୁଟିଯିବ —ପାପ କର୍ମ, ଆଉ ଦେଖି ପାରିବ ନାହିଁ; ଯେପରି କାନ କାଲ ହୋଇଯିବ—ପାପ କଥା ଆଉ ଶୁଣି ପାରିବ ନାହିଁ; ଯେପରି— ଜିଭ ଛିଣ୍ଡି ପଡ଼ିବ ଆପଣଙ୍କର ଏ ଧର୍ମ ଅଦାଲତରେ ସବୁ ଆସାମୀଙ୍କ ପରି ହଲପ ଧରି ମିଛ କହିବାର ଦୁର୍ଯୋଗ ଏ ଜୀବନରେ ଆଉ ଘଟିବ ନାହିଁ ଯେପରି ;

"ହଜୁର ସତ କହୁଛି ମୋ ନାମ ଅନାମ ମହାପାତ୍ର—ସା. ଭଦ୍ରକ ସାବେକ ବଜାର ସାମନା ମୋତଦ୍ଦର ପଛ ପଟେ—ହା: ସା ହଛା ମଦ୍ଧରେ---ଭୋଜନ ଯବିକାବଶତ୍—ପେସା ଧାର୍ମିକ-ତାତ୍ତ୍ୱିକ —ଗାବେଷିକ—ଅର୍ଥାତ୍ ଗବେଷଣା କରେଁ—ଗୋରୁ ରଖେଁ,

ନାହିଁ । ହଲଫ କରି କହୁଛି ଧର୍ମାବତାର ମୁଁ ନ୍ୟାୟ୍ୟ ଓ ଶାନ୍ତିପୂର୍ଣ୍ଣ ଉପାୟରେ ଜୀବନ ନିର୍ବାହ କରେ । ଯେହେତୁ ମୋର ପରିଧାନ ଖଦଡ଼ । କିନ୍ତୁ ଅଯଥା ମୋତେ ପୁଲିସି ବଦେହଦଟ ଦଫାରେ ପକାଇ ହଇରାଣ କରିବାକୁ ଧମକ ଦେବାରୁ ମୁଁ ପୁଲିସ ନାମରେ ପୁଲିସଙ୍କ ଚଉଦ ପୁରୁଷଙ୍କ ନାମରେ—ତାଙ୍କ ବଡ଼ ବଡ଼ଆଙ୍କ ନାମରେ ଏ ଦାବୀ ହେଉଛି କି ହଜୁର୍ ଏମାନଙ୍କର ଜୀବିକା ଏହାଙ୍କ ଉପରେ—ତାହା ଉପରେ—ତଦୁପରି ତଦୁପରେ ଏପରି ସର୍ବୋପରି ସମସ୍ତଙ୍କର ଜୀବିକା ସଦାସଦ୍ ବିଚାରର ଉପରେ ଥିବାରୁ ଅମୁ ବିରୁଦ୍ଧରେ ଏ ଇଲ୍‌ଜାମ ଆଣିବାରେ ହକ୍‌ଦାର ନୁହନ୍ତି । ତାର ପ୍ରମାଣ ସ୍ୱରୂପ ମୁଁ ଏଠାରେ ପ୍ରଜାତନ୍ତ୍ରର ସମ୍ପାଦକ ଓଡ଼ିଶା ଟେକ୍ସଟାଇଲର' ଡିରେକ୍ଟର, ପ୍ରଧାନମନ୍ତ୍ରୀ ମିଃ କାଙ୍କୋଡ଼ିଆ ଇତ୍ୟାଦିଙ୍କ ସାକ୍ଷ୍ୟ ଦେଇ ପାରେ ଯେ ମୋର ଯଦି କୌଣସି ପ୍ରକାଶ୍ୟ ବୃତ୍ତି ବା ostensible livel-hood ନଥାଏ ତେବେ ଏ ଦୁନିଆରେ କାହାର ସେ ବୃତ୍ତି ନାହିଁ ଏବଂ ମୋର ଅଦୃଶ୍ୟ ବୃତ୍ତି ଯଦି ଅନ୍ୟାୟ୍ୟ ହୋଇଥାଏ ତେବେ ମନ୍ତ୍ରୀ ସମ୍ପାଦକଙ୍କ ଠାରୁ ଆରମ୍ଭ କରି ଚପରାସୀ ପିଅନ ପର୍ଯ୍ୟନ୍ତ ସମସ୍ତଙ୍କର ବୃତ୍ତିକୁ ଅଦୃଶ୍ୟ ବୃତ୍ତି କୁହାଯିବ ।"

ଅନାମ ଏପରି ଭାବରେ ବକ୍ତୃତା ଆରମ୍ଭ କଲା ଯେ କୋର୍ଟରେ ଲୋକାରଣ୍ୟ ହେଇଗଲା । ମୁଁ ଆଉ ବେଶିକ୍ଷଣ ତାକୁ କାଠଗଡ଼ାରେ ରହିବାକୁ ନ ଦେଇ ଖଲାସ କରିଦେଲି । ଗଲା-ବେଳକୁ ସେ କହିଗଲା--ହଜୁର ଆପଣଙ୍କର ଏ ଅନୁଗ୍ରହର ପରିଶୋଧ ମୁଁ କରିବି । କୃତଜ୍ଞ ରହିଲି ।

କେତେ ଦିନପରେ ଦିନେ ସକାଳୁ ଆସି ଅନାମ ମୋ ଘରେ ହାଜର । ବେଶ ଭଦ୍ର ପରିଧାନ । ଗୋଟିଏ ଯାକ ଖଦଡ଼

ପୋଷାକ । ମୁଁ ପଚାରିଲି—ଆଜିକାଲି ପରା ସୂତା ନ କାଟିଲେ ଖଦଡ଼ ମିଳୁନାହିଁ ? ତମେ ପାଇଲ କେଉଁଠୁ ? ସେ ହସି ହସି ଉତ୍ତର ଦେଲ—ଆପଣ ସରକାରଙ୍କ ଯୋଗ୍ୟ ଶ୍ରୀକର ନୁହଁନ୍ତି । ଏତକ ଜାଣନ୍ତି ନାହିଁ ଯେ ଯେପରି ସୂତା ନ କାଟି ଖଦଡ଼ ପିନ୍ଧିବାର ହେବ ସେଥିପାଇଁ ସରକାର ଏକ ଯୋଜନା କରିଛନ୍ତି । ମୁଁ ସେଉଠୁ ଆଣିଛି । ଆପଣ ଗଲେ ମଧ ପାଇବେ ।"

ମୁଁ ହସିଲି । ସେ ମୋତେ ହସିବାକୁ ବିରତ କରିବା ପାଇଁ କହିଲ—"ମୁଁ ଦିନେ ଆପଣଙ୍କର ଉପକାରର ପ୍ରତି ଉପକାର କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲି—ଆଜି ମୁଁ ଉପଯୁକ୍ତ ଦିନ ଭାବି ଆସିଛି । କିନ୍ତୁ ଗୋଟିଏ କଥା—ମୁଁ ପ୍ରତିଉପକାର କଲେ ମଧ ବିନା ମୂଲ୍ୟରେ କାହାରିକି ତାହା ଦିଏ ନାହିଁ । କାରଣ ମାଗଣାର ଆଦର ଜଗତରେ ନାହିଁ । ଅବଶ୍ୟ ମୂଲ୍ୟ ଖୁବ୍ ଶସ୍ତା—ଖବରକାଗଜର ମୂଲ୍ୟପରି । ଆପଣଙ୍କୁ ମୁଁ ମନ୍ତ୍ର ଦେବି—ଯନ୍ତ୍ର ନୁହେଁ ମନ୍ତ୍ର କହିଲେ ହେବ । ତାହାକୁ ନିଜେ ପାଖରେ ରଖିବେ ଓ ଅନ୍ୟ ଯେତେ ଲୋକଙ୍କୁ ବିତରଣ କରିବେ—ଆପଣଙ୍କର ସେତେ ଧର୍ମ ହେବ—ଏବଂ ତାହା ଫଳରେ ଅର୍ଥ, କାମ ମୋକ୍ଷ ସମସ୍ତ ଆପଣ ପ୍ରାପ୍ତ ହେବେ । କିନ୍ତୁ ବିଶ୍ବାସ ଆବଶ୍ୟକ । ବିଶ୍ବାସ ବିନା ଫଳ ନାହିଁ ; ବିଶ୍ବାସେ ମିଳଯେ ହରି । ବିଶ୍ବାସ ନକଲେ ଉତ୍କଳର ଏ ଦାରିଦ୍ର୍ୟ ଘୁଞ୍ଚିବ ନାହିଁ । ବିଶ୍ବାସ କରନ୍ତୁ, ବର୍ତ୍ତମାନ ଓଡ଼ିଶା ସରକାର ସର୍ବୋତ୍କୃଷ୍ଟ ସରକାର । ବିଶ୍ବାସ କରନ୍ତୁ ହୀରାକୁଦ ଡ୍ୟାମ ହେଲେ ଓଡ଼ିଶା ଆଲୁଅ ହୋଇଯିବ । ବିଶ୍ବାସ କରନ୍ତୁ ତଉଦ୍ୱାର ଓଡ଼ିଶାର ନରନାରୀଙ୍କୁ ବସ୍ତ୍ର ଯୋଗାଇ ତଉଦ୍ୱାର ଖୋଲିଦେବ । ବିଶ୍ବାସ—ବିଶ୍ବାସ—ବିଶ୍ବାସ—ବିଶ୍ବାସ ବିନୁ ଅନ୍ୟ ପଥ ନାହିଁ ।"

ମୁଁ ପଚାରିଲି "ଆପଣଙ୍କୁ ମନୁଷ୍ୟ ମନର ଏହି ବିଶ୍ୱାସ ଘରଟିକୁ ଦେଖାଇଲା କିଏ ?"

ସେ ଉତ୍ତର ଦେଲା—"ମୋ ଗୁରୁ ଜଣେ ବାଟର ଭିକାରୀ, ଚିହ୍ନି ପାରିବ ନାହିଁ । ଅଥଚ ଏ ଦେଶକୁ ତାର ଦାନ ଅସୀମ, ଗାନ୍ଧି ମରିଗଲେ—ତାଙ୍କ ଧର୍ମ ବି ମରିଗଲା—ସେ କିନ୍ତୁ ଚିରଦିନ ଅମର ।"

'କିଏ ସେ ?'

ଆପଣ ବଡ଼ ଦାଣ୍ଡରେ ତୁଳସୀ ମାଳି ବିକିବା ଲୋକ ଦେଖିଥିବେ—ତାଙ୍କର ଭିତରୁ ଜଣେ । ମୁଁ ତାରଠୁଁ ମୋ ବୁଦ୍ଧି, ମୋ ଧର୍ମ, ମୋ ବିଶ୍ୱାସ ସବୁ ପାଇଛି ।"

"କିମିତି ପାଇଲ ।" ଖାଲି ତା କଥା ଶୁଣି ଆପଣ ଜାଣିଥିବେ ଯେ ବଡ଼ଦାଣ୍ଡର ବୈଷ୍ଣବ ମାଳିମାନେ ଡାକି ଡାକି ବୁଲନ୍ତି—ତୁଳସୀ ମାଳି ନିଅ—ତୁଳସୀ ମାଳି—ନୀଳଚକ୍ରକୁ ଚୁହିଁ କହୁଛି—ଏ ଗୋଟିକଯାକ ତୁଳସୀ । ଏଣେ ମୁହଁରେ ଏ କଥା କହି ହାତରେ ଧରିଥାନ୍ତି ତୁଳସୀ ମାଳିର ଶହେ ଆଠୋଟିଯାକ ଗୁଡ଼ି ମୁଣ୍ଡି ଉପରେ ଗୋଟିକୁ । ବାସ୍ତବରେ ସେଇ ଗୋଟିକ ତୁଳସୀ—ଆଉ ସବୁ ବେଲ ବା ଅନ୍ୟ କାଠ । ସେଇଟିକୁ ସେ ଧରି କହନ୍ତି ଏ ଗୋଟିକଯାକ ତୁଳସୀ । ସୁତରାଂ ସେ ମିଛ କହିବା ପାପରେ, ହଲପ କରିବା ପାପରେ ପାପୀ ନ ହୋଇ କାମଟା ହାସଲ କରି ନିଅନ୍ତି । ମୁଁ ସେ ଗୋଟିକଯାକ ତୁଳସୀର ଶିଷ୍ୟ—ସେଥିପାଇଁ ମୋତେ ଦେଖୁଛନ୍ତି ଗୋଟିକଯାକ ଖଦଡ଼ । ମୋ ମୁଣ୍ଡ ଟୋପିଟି କେବଳ ହାତକଟା ଖଦଡ଼—ଏଟା ଦଶ ବର୍ଷ ଗଲାଣି ଆଉ ଦଶ ବର୍ଷ ଯିବ । ଏ ଥିବାଯାକେ ମୋର ଗୋଟିକଯାକ ଖଦଡ଼ ବୋଲି କହିଲେ ମିଥ୍ୟା ହେବ ନାହିଁ । ବର୍ତ୍ତମାନ ମୋର ତୃଷ୍ଣା

ଓ ଅଦୃଶ୍ୟ ପେଶାର ମୂଳନୀତି ହେଉଛି—ଏଇୟା—ଗୋଟିକଯାକ ତୁଳସୀ । ଏକା  ମୋର ନୁହେଁ ଏ ସମାଜଯାକ ସବୁ ବଡ଼ ବଡ଼ଆ ସେଇଆ । ଆପଣ ମଧ୍ୟ ଆପଣ ଗୋଟିକଯାକ ଧର୍ମାବତାର ଯେମିତି ଠିକ୍ ସେମିତି । ସେମିତି ଗୋଟିକଯାକ କଂଗ୍ରେସ ନେତା—ମନ୍ତ୍ରୀ, ସାହିତ୍ୟିକ—ସବୁ ଅଛନ୍ତି ଏ ଦେଶରେ । ତଫାତ୍ ଏତିକି ସେମାନେ ମାନନ୍ତି ନାହିଁ—ମୁଁ ମାନେ । ସେଥିପାଇଁ ମୋ ବ୍ୟବସାୟଟିର ପ୍ରସାର ଖୁବ୍ ବେଶୀ ।

"ତମ ବ୍ୟବସାୟର ନାମ କଣ ?" ଗୋଟିକଯାକ ତୁଳସୀ ଆଣ୍ଡ କୋ ।"

"ଠିକଣା ?" ପୋ: ଗୋଟିକଯାକ ତୁଳସୀପୁର, କଟକ ।"

"ହିଁ, ତମେ କି କି କାରବାର କର ?"

"କାରବାର ? କାରବାରର ସୀମା ନାହିଁ, କି କାରବାର ମୁଁ କରେ—ଅଦାପାରୁ ଜାହାଜ ପର୍ଯ୍ୟନ୍ତ ମୋହର ଯାହା ଦରକାର ।"

"ଆପଣଙ୍କ ବ୍ୟବସାୟର ପ୍ରଣାଳୀ ?"

"ଆମ ବ୍ୟବସାୟର ମୂଳକଥା ପବ୍ଲିସିଟି ଅର୍ଥାତ୍ ପ୍ରଚାର ଓ ପ୍ରସାର । ଏ ବ୍ୟବସାୟ ଆପଣ ଧରନ୍ତୁ—ଆଉ ପର ଗୋଲାମି କରିବାକୁ ପଡ଼ିବ ନାହିଁ । ମାତ୍ର ଗୋଟାଏ କଥା—ଖବରକାଗଜ-ବାଲାମାନଙ୍କୁ ହାତରେ ରଖିବାକୁ ହେବ । ମୁଁ ତାର ଉପାୟ ବତାଇ ଦେଉଛି—ଏ ଦେଶର ଯୋଡ଼ାଏ ବୋଲି ଦୈନିକ; ଆଉ ଗୋଟିଏ ପତ୍ରିକାକୁ ହାତରେ ରଖିଲେ ପ୍ରଚୁର କାର୍ଯ୍ୟର ପଥ ପରିଷ୍କାର । ସମ୍ପାଦକଙ୍କ ସାଙ୍ଗରେ ଗୋଟାଏ ଆତ୍ମୀୟତା କରିନେଲେ ହେବ । କିନ୍ତୁ ନଜର କରିବି କରିବ ବୋଲି ଯେତେ ଦିନ ଠାଳି ରଖିବେ ସେତେ ଭଲ । ଧରନ୍ତୁ ଆପଣଙ୍କର ଝିଅ ଅଛି—ଆପଣ

ଗଙ୍ଗାତଟରର ମ୍ୟାନେଜିଂ ଡିରେକ୍ଟରଙ୍କୁ ଜୁଆଇଁ କରିବେ କରିବେ ବୋଲି ଦଶ ପାଞ୍ଚଥର ତାଙ୍କୁ ଡାକି ଆପଣଙ୍କ ଝିଅ ପରିଷ୍କା ଖୁଆଇ ଦିଅନ୍ତୁ । ଧରନ୍ତୁ ଆପଣଙ୍କ ବଡ଼ ହେବାକୁ ପୁଅ ଅଛି ବା ଝିଅ ଅଛି—'ନମାଜ' କାଗଜର ସମ୍ପାଦକଙ୍କ ସହ ସମ୍ବନ୍ଧୀ ସମ୍ବନ୍ଧ ପ୍ରୀତି ଦିବ୍ୟ ଭୋଜନର ବ୍ୟବସ୍ଥା ଉପଯୁକ୍ତ କରନ୍ତୁ । କିମ୍ବା ଧରନ୍ତୁ, ଆପଣଙ୍କର ବାଡ଼ୁଅ ଗୃହାଳବୁଢ଼ୀ ଭଉଣୀ ଅଛି, କିମ୍ବା ଆପଣଙ୍କର ସ୍ତ୍ରୀ ମରିଯାଇଛନ୍ତି ୪ । ୫ ଟି ପିଲା ଛାଡ଼ି, ଦେବେ ଆପଣ 'ଖବର' କାଗଜର ସମ୍ପାଦକ ସହ ଶଳା କିମ୍ବା ଭିଣୋଇ ସମ୍ପର୍କରେ ଆବଦ୍ଧ ହୋଇଯାନ୍ତୁ—କାମ ଫତେ ।

"କିନ୍ତୁ ଏ ସମ୍ବନ୍ଧ କରି ତାଙ୍କଠୁଁ ପାଇବ କଣ ?"

"କଳ୍ପନା—ବିଜ୍ଞାପନ— ବିଜ୍ଞାପନ—କେବଳ ବିଜ୍ଞାପନ । ବିଜ୍ଞାପନ କେତୁଟା ବେଳକୁ ବେଳ ଦେଇ ଚାଲୁଥିବେ—ବାସ୍— ତେଣିକି ଚତୁର୍ବର୍ଗ ପ୍ରାପ୍ତ ।"

"କି ବିଜ୍ଞାପନ ଦେବାକୁ ହେବ ?"

"ସେ ସବୁ ଆପଣ ଠିକ୍ କରିବେ ! ମୁଁ କେବଳ ସୂଚନା ଦେଉଛି—ଉପାୟ ବତାଇ ଦେଉଛି । ମୁଁ ନିଜେ କେଉଁ କେଉଁ ଫିକର ପାନ୍ଧ କୃତକାର୍ଯ୍ୟ ହୋଇଛି ତାହା ଆପଣଙ୍କୁ କହିଦେଲେ ଆପଣ ବୁଝି ପାରିବେ । ଦେଖନ୍ତୁ—ମୁଁ ଥରେ ବିଜ୍ଞାପନ କଲି— "ଆପଣଙ୍କ ଭାଗ୍ୟ ମୋ ହାତରେ, ଟଙ୍କାଟିଏ ମନିଅର୍ଡର କଲେ ଫେରି ପାଇବେ ।" ଫଳରେ ପ୍ରତିଦିନ ଶହ ଶହ ମନିଅର୍ଡର ଆସିଲା । ମୁଁ କେବଳ ଦୁଇ ପଇସା ଖର୍ଚ୍ଚରେ ପୋଷ୍ଟକାର୍ଡଟିଏ ଲେଖିଦିଏଁ—"ଆପଣଙ୍କ ଶନି ଖରାପ ଅଛି—ବା ମଙ୍ଗଳ ଖରାପ ଅଛି—ଆପଣ କୌଣସି ମନ୍ତ୍ରୀ, ଲାଟ ବା ସରକାରୀ ଅମଲାଙ୍କ ନାମ ଦିନ[illegible]ଆଠ ଜପ କରନ୍ତୁ—ଭାଗ୍ୟ ଫେରିଯିବ ।"

"ତା'ପରେ ?"

"କିନ୍ତୁ ଏସବୁ ବେଶିଦିନ ଚୁଲିଲାନି । ଅନେକ ଫଳ ପାଇଲେ—ପ୍ରଶଂସା ପତ୍ର ପାଇଲି । ପ୍ରଶଂସା-ପତ୍ର ସମ୍ବାଦ ପତ୍ରରେ ଛାପି ମଧ୍ୟ ଦେଲି । କିନ୍ତୁ ଯେଉଁମାନେ ଗାଳି ବାହାଞ୍ଚ ଗାଳି ପାଇଲି ସେଗୁଡ଼ିକ ଚୁଲିରେ ଜାଳି କରି ଦେଇଛି ।"

"ପ୍ରଶଂସାପତ୍ର କେଉଁଠୁ କେଉଁଠୁ ପାଇଛନ୍ତି ?"

"ପ୍ରାୟ ସବୁ ଶ୍ରେଣୀର ସରକାରୀ କର୍ମଚାରୀଙ୍କଠାରୁ ଏବଂ ବିଶେଷତଃ ପ୍ରଚାରଣା ବିଭାଗର ପ୍ରତ୍ୟେକ ଲୋକ ଫଳ ପାଇଛନ୍ତି ।"

"ଆଚ୍ଛା, ତା'ପରେ ଆଉ କି ଫନ୍ଦ କରିଛନ୍ତି ଶୁଣେ !"

"ଆଉ ଗୋଟାଏ ବିଜ୍ଞାପନ ଥରେ ଦେଲି—ପ୍ରତ୍ୟେକ ନବ ଦମ୍ପତିଙ୍କର ଅବଶ୍ୟ ପାଠ୍ୟ ପୁସ୍ତକ ମୂଲ୍ୟ ୫୧୦୯ । ଅର୍ଡ଼ର ଉପରେ ଅର୍ଡ଼ର ଆସି ପହଞ୍ଚିଲା । ଦେଖନ୍ତୁ ମୁଁ କେବେ ଲୋକଙ୍କୁ ଠକେ ନାହିଁ । କିମ୍ବା ଅଦ୍ଭୁତ ହେଲଭଳି ଟଙ୍କା ବି ନେ ନାହିଁ । ଲୋକେ ସିନା ଭାବିଲେ ମୁଁ କୌଣସି ଯୌନ ଶାସ୍ତ୍ର ଦେବି । କିନ୍ତୁ ଗୋଟିଏ ଲେଖାଏଁ ପକେଟଗୀତା କିଣି ପଠାଇ ଦିଏଁ ।"

"ଗୀତାର ଦାମ ତ ଆଠଅଣା ।" ମୁଁ କହିଲି ।

"ବାକୀ ଆଠଅଣା ପୋଷ୍ଟେଜ୍ ଆଉ ଉପହାର ପତ୍ରରେ ଟଙ୍କା ପ୍ରେରକର ନାମ, ନିଜ ହସ୍ତାକ୍ଷରରେ ଲେଖିଦେଲି ଉପଦେଶ ମଧ୍ୟ ଯୋଗେଇ ଦିଏଁ—ଏହା ନିତ୍ୟ ପାଠ କଲେ ପ୍ରଣୟ ବଢ଼ିବ— ତା ପରେ ନାମ ଦସ୍ତଖତ ମୂଲ୍ୟ ୫୯ । ଏଥିରେ ଅନ୍ୟାୟ କିଛି ନାହିଁ । ଗାନ୍ଧିଜୀ ଦସ୍ତଖତ କରି ତ ପୁଣି ଟଙ୍କା ନଅନ୍ତି । ମୁଁ ବି ଦସ୍ତଖତ କରେଁ ।"

"ଆଜ୍ଞା, ଆଉ କୌଣସି ବ୍ୟବସାୟ କଥା ବତାନ୍ତୁ ତ ।"

"ଆପଣ ଗୁଡ଼ପୋକ ମାରଣୀ ଅସ୍ତ୍ର ଉଦ୍‌ଭାବନ କରିପାରନ୍ତି । ବିଜ୍ଞାପନ ଦିଅନ୍ତୁ—ଟ ୫୯ ରେ ସମସ୍ତ ଗୁଡ଼ପୋକ ସମୂଳେ ବିନାଶ । ଟଙ୍କା ଆସିଲେ ଗୋଟିଏ ଗୋଟିଏ କଣ୍ଟା ଡାକରେ ପଠାଇଦେଇ ଲେଖିବେ, ଗୁଡ଼ପୋକ ଥିବା କଣାରେ ଏ କଣ୍ଟା ପୂରାଇ ବାଡ଼େଇ ଦେଲେ ଗୁଡ଼ପୋକ ସମୂଳେ ବିନାଶ ହେବେ । ସେହିପରି ଯାବତ ଜୀବନ ସ୍ଥାୟୀ ଦଉଡ଼ି ମୂଲ୍ୟ ଟ ୫୦ ଙ୍କା । ଗୋଟିଏ କାଠରେ ଚିହ୍ନ କରି ଅଚଳ ଦଉଡ଼ିଟିଏ ପଠାଇଦେଲେ ଯାବତ୍ ଜୀବନ ଟାଣ ରହିବ ।"

ମୁଁ କହିଲି—"ଅନାମ ବାବୁ ଯାହା କହନ୍ତୁ, ଏଗୁଡ଼ାକ ଠକାମି ।"

ସେ ପ୍ରତିବାଦ କରି କହିଲେ—"କଦାପି ନୁହେଁ—ହାତୀ ଦେବୁ, ଘୋଡ଼ା ଦେବୁ ବୋଲି କହି ପଦ ଭୋଟ ନେବା ପରେ ନେତାଏ ଆମର ହତା ଦିଅନ୍ତି ଘୋଡ଼ୀ ଦିଅନ୍ତି ଓ ସେଇଟାକୁ ପ୍ରଚୁର ବିଘଟଦ୍ୱାରା ନ୍ୟାୟ ବୋଲି ପ୍ରଚାର କରନ୍ତି, ମୋର ଏ ବ୍ୟବସାୟ କାହିଁକି ଅନ୍ୟାୟ ହେବ ? ଯେମିତି ରଜା ସେମିତି ପ୍ରଜା ।"

"ଯାହା କହନ୍ତୁ, ମୁଁ ଏସବୁ କରିପାରିବି ନାହିଁ ।" ମୁଁ ଆପତ୍ତି କଲି ।

"ତେବେ ମୁଁ ଆଉ ଗୋଟିଏ ଉପାୟ କହିବ । ଆପଣ ଏତକ କରିପାରିଲେ ଆପଣାର ଉପକାର କରି ପାରିବେ—ମୋର ବି ଉପକାର କରି ପାରିବେ । ମୋତେ ଆପଣ ପାଞ୍ଚୋଟି ଟଙ୍କା ଦିଅନ୍ତୁ । ଏ ଉପଦେଶର ମୂଲ୍ୟ ମାତ୍ର ପାଞ୍ଚ ଟଙ୍କା—ଏହାଦ୍ୱାରା ବାସ୍ତବରେ ଧର୍ମ, ଅର୍ଥ କାମ, ମୋକ୍ଷ ଚତୁର୍ବର୍ଗ ମିଳିବ । ଏହାପରେ

ବିଜ୍ଞାପନ କରନ୍ତୁ 'ଗୃହକର୍ତ୍ତା ନଥିଲେ ଗୃହକର୍ତ୍ତା ପାଇବେ ସ୍ତ୍ରୀ ନଥିଲେ ସ୍ତ୍ରୀ ମିଳିବ—ପୁତ୍ର ନଥିଲେ ଏହା ସନ୍ତାନ ଉତ୍ପାଦନ କରାଇଦେବ—ରୋଗୀ ରହିଥିଲେ ଖୋଜାଇ ଦେବ—ଗ୍ରୋ-ମୋର-ଫୁଡ୍ ମଧ୍ୟ କରାଇ ଦେବ ଇତ୍ୟାଦି । ଏହା ଭି: ପି. ଯୋଗେ ପଠାଯାଏ—ମୂଲ୍ୟ ୫ ଟଙ୍କା/୭—V P. ଖର୍ଚ୍ଚ ସମେତ ।' ମୁଁ ଆଉ ଆପଣଙ୍କଠାରୁ V P. ଖର୍ଚ୍ଚ ନାଉନ୍ତି କାହିଁକି । ପତ୍ରଟିକୁ ରଖନ୍ତୁ—ଟ ୫୯ ଦିଅନ୍ତୁ ।

କୌତୁହଳ ଚରିତାର୍ଥ ପାଇଁ ଟ ୫୯ ଦେଇ ବନ୍ଦ ଲଫାପାଟିଏ ରଖିଲି । ଭଦ୍ରଲୋକ ଟଙ୍କା ପାଇ ନମସ୍ତେ କହି ଗ୍ଭଲିଗଲେ । ମୁଁ ଲଫାପା ଖୋଲି ଦେଖିଲି—ଏ ପତ୍ର ଯେ ପଢ଼ିବ ସେ ଅନ୍ୟ ସାତ ଜଣକୁ ପଢ଼ାଇବ ଏବଂ ଏହାର ମୂଲ୍ୟ ସ୍ୱରୂପ ସେ ଯୋଗେ ଟ ୫ ଙ୍କା କରି ଆଦାୟ ନଦେବ ମହାପ୍ରଭୁ ହରେକୃଷ୍ଣଙ୍କ ଦ୍ୱାହି ରହିଲା, ତା ବଂଶ ବୁଡ଼ିଯିବ । ଇତି । ଆନାମ ।"

ତା ପରେ ଲେଖା ଥିଲା—"ଏ ପତ୍ର ଯେ ପାଠ କରିବ ସେ ପ୍ରତ୍ୟହ ହରେକୃଷ୍ଣ ନାମ ଜପ କରିବ । ହରେକୃଷ୍ଣ ନାମ ଧରି ଖାଇବ, ଶୋଇବ ଗ୍ରୋମୋରଫୁଡ୍—ଗ୍ରୋମୋର ମ୍ୟାନ କରିବ ଏବଂ ଭୋଟ ଦେବାକୁ ହେଲେ ହରେକୃଷ୍ଣ କହି ହରେକୃଷ୍ଣ ବାକସରେ ଭୋଟ ଦେବ—ତେବେ ଦେହାନ୍ତେ ଚତୁର୍ବର୍ଗ ପ୍ରାପ୍ତ ହେବ ଏବଂ ଜୀବନ୍ତରେ ସାତ ଜଣଙ୍କ ଠାରୁ ୭×୫=୩୫ ପ୍ରାପ୍ତ ହେବ—ଏଥିରେ ସନ୍ଦେହ ନାସ୍ତି ।"

———❋———

# ମଡ଼ର୍ଣ ସାବିତ୍ରୀ

ଏ ଘରଣ୍ଟିଆକୁ ସେ ଘରଣ୍ଟିଆ ହିସାବ କଲେ ପାଞ୍ଚ ବରଷରେ ପାଞ୍ଚୁଟା ହବାର କଥା, ମାତ୍ର ମିଷ୍ଟର ଓ ମିସେସ୍ ପୁରୋହିତଙ୍କର ବାହାଘର ହେବାର ପାଞ୍ଚ ବର୍ଷ ଭିତରେ ଅଧ ଡଜନେ ଛୁଆ କିପରି ହେଲେ, ତାହା ନିର୍ଣ୍ଣୟ କରିବାପାଇଁ ବିଜ୍ଞାନ ପ୍ରଚାର ସମିତିରେ ସଭ୍ୟମାନଙ୍କର ମସ୍ତିଷ୍କ ଘୂର୍ଣ୍ଣାୟମାନ ହୋଇଥିଲା କି ନାହିଁ ଜଣା ନଥିଲେ ମଧ୍ୟ, ମିଷ୍ଟର ପୁରୋହିତଙ୍କୁ ବୁଝାଇ ଶାନ୍ତ କରିବା ପାଇଁ ମୋ ମସ୍ତିଷ୍କ କିପରି ପିଢିଲା ଯାଇଥିଲା ସେ ବିଷୟ ଅଳ୍ପଂ ଅତିବିସ୍ତାରେଣ ।

ବନ୍ଧୁ ପୁରୋହିତ ଓ ମୁଁ ଆଇ.ଏସ୍. ସି. ଯାଏ ସାଙ୍ଗରେ ପଢ଼ିଥିଲୁ । ସେ ଏମ୍. ଏସ୍. ସି. ପାସ୍ କରି ଅଧ୍ୟାପକ । ବିଭା କରିଛନ୍ତି ଜଣେ ଏମ୍. ଏ. ପାସ୍ ଅଧ୍ୟାପିକାଙ୍କୁ । ମେଡ଼ିକାଲରେ

ତାଙ୍କୁ ତାହାତକ ଝିଅଙ୍କ ସାଙ୍ଗରେ ଏକାଠି ପାଠ ପଢ଼ୁଥିଲେ ବି
କେବଳ ଏମ୍. ବି. ବି. ଏସ୍ ପାସ ବା ପଢ଼ାବାଲା ହୋଇ ପାଞ୍ଚ
ବର୍ଷକାଳ, ଖାସକରି ପ୍ରଥମ ତିନି ଚାରି ବର୍ଷ ଆନାଟମି,
ଫିଜିଓଲଜୀ, ଅବଷ୍ଟ୍ରାଟିକସ ଓ ଗାଇନୋକଲଜୀ ଅଧ୍ୟୟନ ବେଳେ
ମଧ୍ୟ ତାହାର ପ୍ରେମରେ ପଡ଼ିବାର ସୌଭାଗ୍ୟ ମୋର ହେଲନାହିଁ ।
ସେ ହେତୁ ମୋର ଟିକିଏ ଅଧ୍ୟାପକ ପୁରୋହିତଙ୍କ ପ୍ରତି ଈର୍ଷା ବି
ହେଉଥିଲା ।

ମାତ୍ର ସେଦିନ ମୋର ବାସ୍ତବିକ ଅଧ୍ୟାପକଙ୍କ ପ୍ରତି ଅତି ଦୟା
ହେଲା । ଅଧ୍ୟାପକ ପଚାରିଲେ—ବନ୍ଧୁ, ପାଞ୍ଚବର୍ଷରେ ଛ'ଟି ସନ୍ତାନ
କଣ ସମ୍ଭବ ?

ମୁଁ କହିଲି—ହଁ, ସାତ ହାତ ମନ୍ଦିରରେ ଆଠହାତ
ଠାକୁରାଣୀ ବି ସମ୍ଭବ । ତମେ ଫାମିଲିପ୍ଲାନିଂ ଅଫିସରଙ୍କ ପାଖକୁ
ଯାଅ ।

ଅଧ୍ୟାପକ କହିଲେ—ମୁଁ ଯାଇଥିଲି । ମାତ୍ର ସେ କହନ୍ତି
ଜନ୍ମନିୟନ୍ତ୍ରଣ କର । ମୁଁ କହିଲି ଆରେ ବାବୁ, ଯାର ମଣିଷ
ଛୁଆ ଭଳି ଛୁଆ ହେଉଥିବ ତାର ସିନା ନିୟନ୍ତ୍ରଣ—ତେଲୁଣି
ପୋକର କି ନିୟନ୍ତ୍ରଣ । ମାତ୍ର ସେ ନ ବୁଝନ୍ତି । ବକ୍ତୃତା ଦେବାକୁ
ଆରମ୍ଭ କରିଦେଲେ—ଯୁକ୍ତରାଷ୍ଟ୍ରରେ ସେକେଣ୍ଡରେ କେତେ ଛୁଆ
ଜନ୍ମ ହୁଅନ୍ତି, ଇଂଲଣ୍ଡରେ, ଫ୍ରାନ୍ସରେ, ଇଟାଲି, ଜର୍ମାନୀରେ
କେତେ ଆଉ ଫାମିଲି ପ୍ଲାନିଂ ପରେ ସେ ସବୁ ରାଷ୍ଟ୍ରରେ କେତେ
ପିଲା କମିଗଲେ । ତା ତୁଳନାରେ ଭାରତବର୍ଷରେ କେତେ
ବଢ଼ି ଚାଲିଛନ୍ତି । ଭାରତବର୍ଷରେ ଦୁଇଟି ସମସ୍ୟା ଭିତରୁ ଗୋଟିଏ
ଶରଣାର୍ଥୀ, ଆଉ ଗୋଟିଏ ମରଣାର୍ଥୀ ଅର୍ଥାତ୍ ଜନ୍ମ ନ ହୋଇ
ମରିବା କାମନା କରୁଥିବା ଭ୍ରୂଣଙ୍କର ସମସ୍ୟା ବଡ଼ ହୋଇ ଠିଆ

ହୋଇଛନ୍ତି । ତେଣୁ ଆପଣମାନେ ଜନ୍ମ ନିୟନ୍ତ୍ରଣ କରନ୍ତୁ ଇତ୍ୟାଦି ଇତ୍ୟାଦି ।

ମୁଁ ପଚାରିଲି—'ଆପଣ ନିଜେ କରୁଛନ୍ତି କି ?" ମହିଳା ଉତ୍ତର ଦେଲେ—ମୁଁ ମିସ୍ ।

ବିଚାରିଲି ସରକାର ଏବେ ବାଂଝଙ୍କୁ ପ୍ରସବ ଚିନ୍ତା ଆଣି ଦେଇଛନ୍ତି । ମନ୍ଦ ନୁହେଁ । ଜନ୍ମ ନିୟନ୍ତ୍ରଣ କରିବା ବା ନିଷ୍ଫଳା ହେବାଟା ଏଥର ନିଶ୍ଚୟ ଫଳବତୀ ହେବ ।

ମୁଁ କହିଲି ତେବେ, ତମେ ଆଗ ସେ କାର୍ଯ୍ୟରେ ଆଗଭର ହୋଇ ଆଦର୍ଶ ସ୍ଥାନୀୟ ହୁଅ ।

ଅଧ୍ୟାପକ କହିଲେ—ସେଇ ପରାମର୍ଶ ତ ତୋଠାରୁ ନେବାକୁ ଆସିଛି ।

ମୁଁ କହିଲି—ବାର୍ଥ କଣ୍ଟ୍ରୋଲ ତ କରିବୁ—ଆଉ ପରାମର୍ଶ କଣ ।

"କଥା କ'ଣକି—ମୋ ସ୍ତ୍ରୀ କାନ୍ଦୁଛି !"

"କାହିଁକିରେ ?"

କାରଣ ମୁଁ କହୁଛି—ଏଇଠି ବାଡ଼ ପଡ଼ୁ—ପୂର୍ଣ୍ଣଚ୍ଛେଦ । ଛ ରୁ 'ସାତ' ନ ହଉ । ଏତିକିରେ କଳି ଗୋଳ । ଶ୍ରୀମତୀ କହନ୍ତି ସେ ଷ୍ଟେରିଲାଇଜଡ୍ ହେବେ—କି ଅିଉବ ଝଛି ତାକୁ ଲିଟେରେର କରିଦେବେ । ମାତ୍ର ଡାକ୍ତର ଦେଖି କହନ୍ତି—ପ୍ରସବ ପରେ ପରେ ସେ କାମଟା ସହଜ । ତେଣୁ ଆଉ ଥରେ ପ୍ରସବର ଅର୍ଥ ଗର୍ଭର ଅନ୍ତ ଧ୍ୱଂସ ପାଇଁ ଆଉ ଗୋଟିଏ ଜୀବର ଆବାହନ ।

"ତେବେ ତୁ ଭେସେକଟମି କରିପକା"

ମୁଁ କହୁଛି—ସେଇୟା । ମାତ୍ର ଅଧ୍ୟାପିକା ନାରାଜ । ସେ କହନ୍ତି—ମୋର କାଳେ କଷ୍ଟ ହେବ । ତାହା ସେ ଦୁଇ ଚକ୍ଷୁରେ

ଦେଖିପାରିବେ ନାହିଁ । ମୁଁ କହିଲି, ଚଶମା ତ ଅଛି—ଗୃହ ଚକ୍ଷୁରେ ହେଲେ ଦେଖ । ତଥାପି ନାରାଜ । ବନ୍ଧୁ, ତମେ କହିଲ —ତାଙ୍କର ତ ମେଜର ଅପରେସନ । ମୋର ସାମାନ୍ୟ ଦଶ ପନ୍ଦର ମିନିଟର ମାମଲା । ମୁଁ ଭଲ ତାଙ୍କର ଏ କଷଣ ସହିବ କେମନ୍ତେ ?”

ମୁଁ ଭାବିଲି, ଏ ତ ବିଷମ ସମସ୍ୟା । ଉପାୟ ନ ପାଇ କହିଲି—ବନ୍ଧୁ—ସ୍ତ୍ରୀ ଛଡ଼ା ଜନ୍ମ ନିୟନ୍ତ୍ରଣ ନିମନ୍ତେ ଅନେକ ରାସ୍ତା ଅଛି—ସରକାର ବିନା ପଇସାରେ ସେ ସବୁ କରେଇଦେବେ—ସେ ବାଟରେ ଚେଷ୍ଟା କର ।”

ଅଧ୍ୟାପକ ବନ୍ଧୁ କହିଲେ—“ସେ ସବୁ ଚେଷ୍ଟା କରିବା ସତ୍ତ୍ୱେ ଲେଗ୍‌ହର୍ନ ଠାରୁ ବି ବଳିଗଲେ ଶ୍ରୀମତୀ ।” ଫେମିଲି ପ୍ଲାନିଂ ଅଫିସର କହିଲେ—ଏ ସବୁ ସମୟ ସମୟରେ ଅନ୍ ସକ୍‌ସେସ୍ ଫୁଲ ହୁଏ ତେଣୁ ଶ୍ରୀମତୀ ଅପରେସନ କରନ୍ତୁ ବା ଶ୍ରୀମାନ୍ ଭେସେକ୍‌ଟମି କରନ୍ତୁ । ତାଙ୍କର ପରାମର୍ଶ ଫଳରେ ଆମର ଦାମ୍ପତ୍ୟ କଳହ ସୃଷ୍ଟି । ଏଥିର ସମାଧାନ କର ବନ୍ଧୁ । ନଚେତ୍ ଏ ଜୀବନ ରହିବ ନାହିଁ ।

କହି ଅଧ୍ୟାପକ ହେ ହେ କାନ୍ଦିପକାଇଲେ । ମୁଁ ଚିନ୍ତା କରିବା ପୂର୍ବରୁ ଅଧ୍ୟାପିକା ମଧ୍ୟ ଅଧ୍ୟାପକଙ୍କୁ ଖୋଜି ଖୋଜି ହାଜର । ଅଧ୍ୟାପିକା କହିଲେ—ଦେଖନ୍ତୁ ଡାକ୍ତର ସାହେବ—ସ୍ୱାଙ୍କର ମୋ ପ୍ରତି ଏତେ ଅବିଶ୍ୱାସ ଯେ ମୋର ଅପରେସନ୍ ସେ କରାଇ ଦେବେ କଦାପି ନାହିଁ । ମୁଁ ସ୍ତ୍ରୀଲୋକ ହୋଇ ଭଲ କିପରି ତାଙ୍କ ଦେହକଷ୍ଟ ସହିବି କହନ୍ତୁ ।

ଅଧ୍ୟାପକ କହିଲେ—ଦେଖନ୍ତୁ ଡାକ୍ତରବାବୁ । ଏ ଟା ବଡ଼ ଅନ୍ୟାୟ ଅଭିଯୋଗ । ବରଂ ତାଙ୍କର ମୋ ପ୍ରତି ଅବିଶ୍ୱାସର ମାତ୍ରା

ଅନୁଭବ କରୁଛୁ । ସ୍ତ୍ରୀଲୋକଗୁଡ଼ାକ ନିବୁଦ୍ଧିଆ । ସେ ଭାବୁଛନ୍ତି ଭେସେକ୍ଟମି କଲେ ମୁଁ ଚିରସ୍ୱାଧୀନ ହୋଇ ନିର୍ଭୟରେ ବୁଲିବ । ଆଚ୍ଛା ଏବେ କଣ ମୋର କୌଣସି ବାଧା ଅଛି । ଯେତେବେଳେ ଖୁଚୁଷପୁଅ । ଆମର କି ଡର ।

ଦୁଇ ଜଣଙ୍କର ଜିଦି ଦେଖି ମୁଁ ବିଚଳିତ ହୋଇପଡ଼ିଲି । ଏହାର ସମାଧାନ ମୋ ପକ୍ଷରେ ଅସମ୍ଭବ । ମନେ ମନେ କେବଳ ଏଇ ବିଜ୍ଞାନ ଓ ବୈଜ୍ଞାନିକମାନଙ୍କୁ ମୁଁ ଅଭିଶାପ ଦେଉଥିଲି । କେତେ କୂଳ ଭସାଇ ଦେଉନାହାନ୍ତି ଏମାନେ—କେତେ ଘର ଭଙ୍ଗାଇ ଦେଉ ନାହାନ୍ତି ଏମାନେ ।

ଶେଷରେ ମୁଁ କହିଲି—ତେବେ ଦୁଇ ଜଣଯାକ ଷ୍ଟେରିଲାଇଜ୍ ହୋଇଯା—ଦୁହେଁଯାକ ଅପରେସନ କରିନିଅ ।

ଅଧ୍ୟାପକ କହିଲେ—ଏଥିରେ ସମସ୍ୟାର ସମାଧାନ କାହିଁ ? କଷ୍ଟ ତ ଦୁହେଁ ଭୋଗିଲୁ । ସେମିତି ଜଣେ କଷ୍ଟ ଭୋଗି ଯେତିକି—ଏମିତି ଦି ଜଣ କଷ୍ଟଭୋଗି—ସେତିକି—ଅଧିକ ତ କିଛି ନାହିଁ ।

ଅଧ୍ୟାପିକା କହିଲେ—ଦୁଇ ଜଣ ଅପରେସନ କଲେ କଣ ମନରୁ ସନ୍ଦେହଟା ଦୂର ହୋଇଯିବ ।

ମୁଁ କହିଲି—ତେବେ କେହି ଅପରେସନ ନ କର ତା’ ହେଲେ !

ଅଧ୍ୟାପକ ବନ୍ଧୁ କହିଲେ—ମୋର କିଛି ଆପତ୍ତି ନାହିଁ । ମାତ୍ର ଏଣିକି ଯେ ସନ୍ତାନ ହେବେ ତାର ଭାର ତୋ ଉପରେ ତ ?

ଅଧ୍ୟାପିକା କହିଲେ—ଦେଖନ୍ତୁ ମୋ ଦେହ ପ୍ରତି ଟିକିଏ ଦୃଷ୍ଟି ଦିଅନ୍ତୁ । ଆପଣ ମୋ ପିଲାଙ୍କୁ ପାଳନ୍ତୁ ନ ପାଳନ୍ତୁ, ପିଲମାନଙ୍କୁ ମଉସା ଡାକନ୍ତୁ ବା ବାପା ଡାକନ୍ତୁ ତାଙ୍କୁ ଯଦି ଅପମାନ ନ ଲାଗୁଛି ମୋର ବା କି ଅପମାନ । ମାତ୍ର ଆପଣଙ୍କ ପାଖକୁ

ଯେତେ ଲେକ୍‌ଟୋଜେନ ଆଉ ଗ୍ଳୁକୋଜସେମଲ ଆସିବ—ଏଣିକି ସେ ସବୁ ଯେପରି ଆମର ବୋଲ ଧରିନେବେ । ମୋର ସୁନ୍ଦର ଶରୀରକୁ ମୁଁ ଆଉ ନଷ୍ଟ କରିପାରିବ ନାହିଁ ।

ଉଭୟଙ୍କ କଥାରେ ରାଜି ହୋଇ ବନ୍ଧୁ ଓ ବନ୍ଧୁ ପତ୍ନୀଙ୍କୁ ବିଦାୟ କରିଦେଲି । ମାତ୍ର ପରେ ପରେ ଅଧ୍ୟାପକ ପୁରୋହିତଙ୍କୁ ଡାକି କହିଲି—ଦେଖ ପୁରୋହିତ, ତମ ଅପରେସନଟା ମାତ୍ର କେତେ ମିନିଟ୍‌ର ପାଠ—ତମ ସ୍ତ୍ରୀଙ୍କୁ ନ ଜଣାଇ ହସପାତାଳ ନ ଯାଇ ମଧ୍ୟ ମୁଁ ମୋ ଘରେ ସେ କାମ ସାରିଦେଉଛି ।

ବନ୍ଧୁ ପଚାରିଲେ—ଅପରେସନ ପରେ ଘରକୁ ଚାଲିଯିବି ତ ?

"ନାଇଁ, ଟିକିଏ ଏଇ ସାମାନ୍ୟ କେତେ ଘଣ୍ଟା ଏଇଠି ମୋ ଖଟ ଉପରେ ବିଶ୍ରାମ ନବାକୁ ପଡ଼ିବ ।"

"ଦେଖ, ସେତିକି ସମୟ ମଧ୍ୟ ସେ ମୋତେ ଆଖିରୁ ଅନ୍ତର କରି ପାରିବେ ନାହିଁ । ଖୋଜି ଖୋଜି ଏଇଠି ଆସି ଯଦି ପହଞ୍ଚିଯାନ୍ତି —ତେବେ କ'ଣ କହିବ ।"

"କହିବି—ହଠାତ୍ ହାଇ ବ୍ଲଡ଼୍ ପ୍ରେସାର୍—ମୁଁ ସାଟିଫାଇ କରିବି, ଚିନ୍ତା ନାହିଁ ।"

"ମିଛ କହିବ ?—ପୁଣି ଅଧ୍ୟାପିକା ସ୍ତ୍ରୀ ଆଗରେ ?"

"ନାଇଁ—ନାଇଁ ତୋତେ କହିବାକୁ ପଡ଼ିବ ନାହିଁ । ସେ କାମ ଡାକ୍ତରଙ୍କର, ତୁ କେବଳ ଅନ୍‌କନ୍‌ସସ୍ ହୋଇ ଆଖି ମିଟିମିଟି କରି ପଡ଼ିବୁ—ଆଦୌ ପାଟି ଫିଟାଇବୁ ନାହିଁ ।"

ସେଇ ଅନୁସାରେ ମୁଁ ଅଧ୍ୟାପକ ପୁରୋହିତଙ୍କର ବ୍ୟବସ୍ଥା କଲି । ସତକୁସତ ଅଧଘଣ୍ଟାଏ ହୋଇଛି କି ନାହିଁ ଅଧ୍ୟାପିକା ସଶରୀରେ ବିଦ୍ୟମାନ୍ । ଦୁଆର ମୁହଁରେ ଗୋଡ଼ ଦେଇଛନ୍ତି କି

ନାହିଁ ଶ୍ରୀମତୀ ପୁରୋହିତ ଚିତ୍କାର କରି କହିଲେ—ତୁ ମନା କରୁଛି—ସେ ଅପରେସନ କରେଇଦେଲେ ?

ମୁଁ ଆଙ୍ଗୁଳି ଦେଖାଇ କହିଲି – ଚୁପ୍ ଚୁପ୍—ପାଟିକର ନାହିଁ—ଭେରି ସିରିଅସ – ହାଇବ୍ଲଡ଼ ପ୍ରେସର ?

"ଏଁ ବ୍ଲଡ଼ ପ୍ରେସର ? ନା ବ୍ରେନ୍ ପ୍ରେସର ? ଛ'ଛଟା ପିଲାର ବାପ ଯେ, ତାର ହାଇ ବ୍ଲଡ଼ ପ୍ରେସର ନା ହାଇବ୍ରେନ୍ ପ୍ରେସର । ଡାକ୍ତର ବାବୁ, ସତ କୁହ—ଆଉ କେଉଁଠା ପିଲା ହେଲେ ତାଙ୍କ ହାଇ ପ୍ରେସର ଲୋ ହେବ ? ମୁଁ ପଚ୍ଛକେ ମାଠରୀ ନିଶ୍ଚି କ୍ଷୁଟି ନେଇ ତାଙ୍କର ସେବା କରିବି—କିନ୍ତୁ ତାଙ୍କ ମୁଣ୍ଡରୁ ରକ୍ତକୁ ଖସାଇବାକୁ ହବ ଡାକ୍ତରବାବୁ !"

"ଦେଖନ୍ତୁ, ଆପଣ ସେଠିକି ଗଲେ ପ୍ରେସର ବଢ଼ିବ ' ଆପଣ ଭିତରକୁ ଯାଇ ଖାଇ ପିଇ ଆରାମ କରନ୍ତୁ । ଟିକିଏ ଅବସ୍ଥା ଭଲ ହେଲେ ମୁଁ ଆପଣଙ୍କୁ ଡାକିବି । ବର୍ତ୍ତମାନ ବଡ଼ କ୍ରିଟିକାଲ୍ ଷ୍ଟେଜ୍ ।"

ଅଧ୍ୟାପିକା ଭୋ ଭୋ କି କାନ୍ଦ ପକାଇଲେ । ମୁଁ କହିଲି, ଧୈର୍ଯ୍ୟ ଧରନ୍ତୁ—ଏହା କାନ୍ଦିବାର ବେଳ ନୁହେଁ । ସେ ଯୁଗରେ ସାବିତ୍ରୀ ଯମପୁରରୁ ସ୍ୱାମୀକୁ ଫେରାଇ ଆଣିଥିଲେ । ଆପଣ ଚୁପ୍ ଚୁପ୍ କି ଘରେ ତପସ୍ୟା କରନ୍ତୁ—ପୁରୋହିତ ଅବଶ୍ୟ ବଞ୍ଚିବ ।

ଅଧ୍ୟାପିକା କହିଲେ—ଡାକ୍ତରବାବୁ, ସେଦିନ ମୁଁ ଗୋଟାଏ ଘୋର ଖରାପ ସପନ ଦେଖିଲି । ମୁଁ ଦେଖିଲି—ଇଏ ଭେଷକ୍ ହେମି କରି ବିଛଣାରେ ପଡ଼ିଛନ୍ତି । ମୁଁ ପାଖରେ ବସିଛି । ଯମ ଗୋଦଡ଼ ଗୋଡ଼ରେ ତାଙ୍କ ବିଛଣା ପାଖରେ ଆସି ଠିଆ ହେଲା । ମୁଁ କହିଲି—ଯମରାଜ ତମେ ସାବିତ୍ରୀଙ୍କି ସତ୍ୟବାନ ଦେଇଥିଲ—ଅଧ୍ୟାପିକାକୁ ଅଧ୍ୟାପକଟିଏ ଦିଅ ! ଯମ କହିଲେ ଏ ଯୁଗରେ ତ

ସାବତୀ ଜଣେ ନୁହେଁ—ଅସଂଖ୍ୟ । ଝଣକୁ ବର ଦେଲେ ସମସ୍ତଙ୍କୁ ଦେବାକୁ ପଡ଼ିବ । ଆଉ ଶାସ୍ତ୍ର କେହି ରଖିବେ ନାହିଁ ।

ମୁଁ କହିଲି - ଆପଣ ମିଛ କହୁଛନ୍ତି—ଏ ଯୁଗରେ ଏତେ ଗଳ୍ପ ଉପନ୍ୟାସ ଲେଖା ହେଉଛି—କାହିଁ ସାବତୀ ସତ୍ୟବାନ ଉପାଖ୍ୟାନ ପରି କେଉଁଠି ତ ଦେଖୁନି ।

ଯମ କହିଲେ—ସେ ଯୁଗରେ ସିନା ଗୋଟିଏ ସାବିତ୍ରୀ ଥିଲେ ସେ ପୁରାଣକାର ସେଇ ନାଁକୁ ଘୋଷି ଦିଇଲେ—ସେମିତି ରଖିଦେଲେ । ଏ ଯୁଗରେ ତ ତିନି ବଳା ତିନି ବଳା ସାବତୀମାନେ ଅଛନ୍ତି—ଜଣକ କଥା ଲେଖିଲେ ସମସ୍ତେ ଅଭିମାନ କରିବେ ।

ଯମଙ୍କ କଥା ଶୁଣି ମୁଁ ବହୁତ କାନ୍ଦିଲାରୁ ଯମ କହିଲେ—ଦେଖ, ସେ ଯୁଗର ସାବତୀ ଶହେ ପୁଅ ମାଗିଲେ ବୋଲି ସ୍ୱାମୀଙ୍କୁ ଫେରି ପାଇଲେ । ମାତ୍ର ଏ ଯୁଗର ସାବତୀମାନେ ତ ଦୁଇରୁ ଅଧିକ ଚାହୁଁ ନାହାନ୍ତି—ଫେମିଲି ପ୍ଲାନିଂ କରୁଛନ୍ତି । ତେଣୁ ତାଙ୍କ କଥା ଗ୍ରହଣୀୟ ନୁହେଁ ।

ମୁଁ କହିଲି—ସ୍ୱାମୀଙ୍କୁ ନ ପଚାରି ମୁଁ ତ ତାର ଜବାବ ଦେଇପାରୁ ନାହିଁ । ତା'ପରେ ନିଦ ଭାଙ୍ଗିଗଲା ।

ବନ୍ଧୁ ଅଧ୍ୟାପକ ଆଉ ସମ୍ଭାଳି ନ ପାରି—ଘରୁ ଚିହିଁଡ଼ା ଛାଡ଼ି କହିଲେ—ମୋତେ ଯମ ଫେରେଇ ଦେଇଛି—ମୁଁ ଯମ ପୁରରୁ ଫେରି ଆସିଛି ଗୋ ମୋର ମଡ଼ାର୍ଣ ସାବତୀ—ଟିକିଏ ଏଣିକି ଆସ—ଦେଖେଁ ତମ ଚନ୍ଦ୍ରୀନିକ୍ ବଦନ !—ଆଉ ଶହେ ପୁଅ ଜନ୍ମ କରିବାର ଆବଶ୍ୟକ ପଡ଼ିବ ନାହିଁ ।

× × × ×

ଘଟଣା ଛ'ମାସ ପରେ ବନ୍ଧୁ ଅଧ୍ୟାପକ ଜଣେ ଆସି ମୋତେ ଚୁପ୍ ଚୁପ୍ କ କହିଲେ—ଡାକ୍ତର,—ତାଙ୍କ ସ୍ୱପ୍ନଟା କ'ଣ ସତ ହୋଇଗଲା ତ !

ମୁଁ ପଚାରିଲି—କ'ଣ କହୁଛ ?—

ବନ୍ଧୁ କହିଲେ—ସାବିତ୍ରୀଙ୍କର ଗର୍ଭେ ପୁଅଟିଏ ବର୍ତ୍ତମାନ ସପ୍ତମ ଗର୍ଭ ।

ମୁଁ କହିଲି—ବେଳେ ବେଳେ ଭେସକ୍ଟମି ମଧ୍ୟ ଅନ୍‌ସକ୍‌ସେସ୍‌ଫୁଲ୍ ହୁଏ ।

# ଧୂଇଁପୋଡ଼୍ ନେତାଙ୍କ ବନ୍ୟାଞ୍ଚଳ ଉଦ୍‌ବୋଧନ

ଭାଇ ଓ ଭଉଣୀମାନେ ।

ଆପଣମାନେ ଜାଣନ୍ତି ଆଜି ଆମର ଏହି ଓଡ଼ିଶା ରାଜ୍ୟ—ଦିନେ ଉତ୍କଳ ନାମ ଧରିଥିଲା—ଖାଲି ଉତ୍କଳ କାହିଁକି, ଉଡ୍ର ନାମରେ ଡକାଯାଉଥିଲା । ଖାଲି ଉଡ୍ର କାହିଁକି କଳିଙ୍ଗ ନାମରେ ପୃଥିବୀ ବିଖ୍ୟାତ ଥିଲା, ଖାଲି ପୃଥିବୀ କାହିଁକି ବିଶ୍ୱ ଚରାଚରରେ ସୁବିଦିତ ଥିଲା, ଆପଣମାନେ ଜାଣନ୍ତି ଆଜି ସେଇ ଓଡ଼ିଶା ଦେଶରେ ଆମେ ଜନ୍ମ ଲଭ କରି, ଖାଲି ଓଡ଼ିଶାରେ କାହିଁକି ସାରା ଭାରତ ବର୍ଷରେ, ସାରା ଭାରତ ବର୍ଷରେ କାହିଁକି ସମଗ୍ର ଏସିଆ ଖଣ୍ଡରେ; କେବଳ ଏସିଆ କାହିଁକି ଏଇ ପୂର୍ବ ହେମିସ୍ଫିଅର ମଧ୍ୟରେ, କେବଳ ସେତିକି ନୁହେଁ, କହିବାକୁ ଗଲେ ସମସ୍ତ ପୃଥିବୀରେ ଆପଣ ଜାଣନ୍ତି ଆଜି ଯେଉଁ ଲକ୍ଷ ଲକ୍ଷ

ଲୋକ, ଲକ୍ଷ ଲକ୍ଷ କାହିଁକି କୋଟି କୋଟି, କୋଟି କୋଟି, କାହିଁକି ଅର୍ବୁଦ ଅର୍ବୁଦ, ଅର୍ବୁଦ ଅର୍ବୁଦ, କାହିଁକି ପର୍ବତ ପର୍ବତ ମନୁଷ୍ୟ ଆଜି ଯେପରିଭାବରେ ଆପଣ ଜାଣନ୍ତି ପ୍ରଳୟଙ୍କର ବନ୍ୟାରେ ଘରଦ୍ୱାର ଭସାଇ ଦେଇଛନ୍ତି, ଖାଲି ଘରଦ୍ୱାର କାହିଁକି, ଆପଣ ଜାଣନ୍ତି ଆଜି ଗୋରୁ ଗାଈ, ଧନ ଦଉଲତ, ଧାନ, କୋଳଥ, ବିରି, ମୁଗ, ବାଇଗଣ, ବୋଇତାଳୁ, ଜହ୍ନି, ଭେଣ୍ଡି, ନାଉ, କଖାରୁ, ପୋଇ, ମାରିଷ, ନେଉଟିଆ, କଳାମ, ଖାଲି ନେଉଟିଆ ନୁହେଁ, ଆପଣ ଜାଣନ୍ତି ତାହାଠାରୁ ଆହୁରି ଅଧିକ ମୂଲ୍ୟବାନ ପଦାର୍ଥ ଏପରିକି, ଆପଣ ଜାଣନ୍ତି ତାଙ୍କର ସ୍ୱଜନ ପରିବାର ଆଜି ସ୍ୱଜନ ପରିବାର କେବଳ ନୁହେଁ—ଏପରିକି ଆଜି ସ୍ତ୍ରୀ ବାଳକ ମଧ୍ୟ ଏହି ପ୍ରଳୟଙ୍କରୀ ବନ୍ୟାରେ ଆଜି ଉତ୍ସର୍ଗ କରିଦେଇ ଯେପରି ବୀରତ୍ୱ ପ୍ରଦର୍ଶନ କରି ଆଜି ସମଗ୍ର ପୃଥିବୀ ନୁହେଁ, ଯେଉଁ ଯେଉଁ ସ୍ଥାନକୁ ଆଜି ଆମର କୃଷୀ ମୂଲିଆ ସର୍ବହରାର ଏକଚ୍ଛତ୍ର ଦେଶ, ଭୂସ୍ୱର୍ଗ ଆପଣ ଜାଣନ୍ତି ଯେଉଁଠିକି ମାଲିକ ନାହିଁ, ମୂଲିଆ ନାହିଁ, ଯେଉଁଠିକି ଆଜି କ୍ଷୁଧା ନାହିଁ, ତୃଷା ନାହିଁ, ଯେଉଁଠିକି ଆଜି ବାପ ନାହିଁ, ଦାଦା ନାହିଁ, ଯେଉଁଠିକି ଆଜି ମା ନାହିଁ ଭଉଣୀ ନାହିଁ—ସବୁ ସରକାର ମା ଭଉଣୀ ବାପ ହୋଇ, ଶଶୁର ଶାଶୁଙ୍କ କାମ ତୁଲାଉଛନ୍ତି, ଆଜି ଖାଇବାକୁ ପିଇବାକୁ ଦେଉଛନ୍ତି, ଶୋଇବାକୁ ବସିବାକୁ ଦେଉଛନ୍ତି, ପିନ୍ଧିବାକୁ ଆଜି ଜାମା ଦେଉଛନ୍ତି, ଯୋତା ଦେଉଛନ୍ତି —ଆଜି ଯେ କେବଳ ଜାମା ପାଇଜାମା ଦେଉଚନ୍ତି ତା ନୁହେଁ ପାଇଜାମା କେବଳ ଯେ ସେମାନେ ଦେଉଛନ୍ତି ତାହା ନୁହେଁ, ଆପଣମାନେ ଜାଣନ୍ତି ପାଇଜାମାରେ ପ୍ରସାବ କରିବା, ଝାଡ଼ା ଫେରିବା ପାଇଁ ଆଜି ଯେପରି ବାଟ ରଖିଛନ୍ତି, ଆଜି ଯେପରି ଝିଅ ମଦ୍ଦ ସେଠାରେ ହସୁଛନ୍ତି, ଆଜି ଯେପରି ସେଠାରେ ବୈଜ୍ଞାନିକ-

ମାନେ ଆପଣମାନେ ଜାଣନ୍ତି ଆକାଶମାର୍ଗରେ ଉଡ଼ି ଚନ୍ଦ୍ରଲୋକରେ ଖାଲି ଚନ୍ଦ୍ରଲୋକରେ କାହିଁକି, କହିବାକୁ ଗଲେ ମଙ୍ଗଳ, ବୁଧ, ବୃହସ୍ପତି, ଆଉ ଏପରିକି ସୂର୍ଯ୍ୟଲୋକରେ ଆଜି ଆପଣମାନେ ଜାଣନ୍ତି ସାରା ବିଶ୍ୱ, ଯାହା ଚମତ୍କୃତ ହୋଇ ଦେଖୁଛନ୍ତି ଆଜି ସେହି ପୁଣ୍ୟ ଭୂମିରେ ଆପଣମାନେ ଜାଣନ୍ତି ଆମେରିକା ଲୁଚି ଲୁଚି ଯେପରି ଭାବରେ ଭିନ୍ନ ରୁଷିଆରେ-ଇଉରୋପରେ, ଇଉରୋପରେ କାହିଁକି ଆଜି ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡରେ ମାନେ ଆପଣମାନେ ଜାଣନ୍ତି କପରି କୃଶ୍ଚେଭ, ଆଇଜେନହାୱାର ପ୍ରେସିଡେଣ୍ଟ ଥିବାଯାଏ ମାନେ ଦୁଇଜଣଙ୍କ ମାନ କରି ଆଜି ପଣ୍ଡିତ ନେହେରୁ ଆପଣମାନେ ଜାଣନ୍ତି ଯେପରିଭାବରେ ଏକ ସମାଧାନ ବକ୍ତୃତା ଦେଇ ଆଜି କେବଳ କୃଶ୍ଚେଭଙ୍କର ନୁହେଁ ଆପଣମାନେ ଜାଣନ୍ତି ଆଇଜେନହାୱାର, ମ୍ୟାକ୍‌ମିଲନ ଖାଲି ନୁହନ୍ତି (କରତାଳି) ଆପଣମାନେ ଜାଣନ୍ତି, ଆଉ ଜର୍ମାନୀ ଆଫ୍ରିକା, ଆମେରିକା, ଫ୍ରାନ୍‌ସ, ବେଲୁଚିସ୍ଥାନ, ଇଣ୍ଡୋନେସିଆ ଜାପାନ, ମାଡାଗାସ୍କାର ଆଉ ଆପଣମାନେ ଜାଣନ୍ତି ଲଙ୍କା ଫରମୋଜା, ବେଲୁଚିସ୍ଥାନ, ସ୍ପେନ, ଇଜିପ୍ଟ, ବର୍ମା ଆଉ You know, the entire U. N. O. has been (ଓଡ଼ିଆ ଓଡ଼ିଆ ଧ୍ୱନି) I am sorry ଆଉ କେବଳ ଇଂରାଜୀରେ ନୁହେଁ, ଆପଣମାନେ ଜାଣନ୍ତି ମୁଁ ହିନ୍ଦୀରେ ମାନେ ହମ୍ ଐସା ହିନ୍ଦୀ ବୋଲି ମାନେ ହିନ୍ଦୁସ୍ତାନୀ ବୋଲି, ଏକବାର୍ ଅବଦୁଲ କଲମ୍ ଆଜାଦ୍ ଆପ ଜାନତେ ହୈ କେ ଆଜ (ଓଡ଼ିଆ ଓଡ଼ିଆ ଧ୍ୱନି) ମେରା ଦୁଃଖ ହୈ-ଆପ ରାଷ୍ଟ୍ରଭାଷା ନହୀ ବୁଝ୍‌ତା ହୈଁ—ଆଜ୍ ଯଦ୍ୟପି ହାମ୍ ରାଷ୍ଟ୍ରଭାଷା (ଓଡ଼ିଆ ଓଡ଼ିଆ ବିପୁଳଧ୍ୱନି) ମାନେ-ମାନେ ଏଇ ରାଷ୍ଟ୍ରଭାଷା ମାନେ ଆପଣମାନେ ଜାଣନ୍ତି ଆଉ ଆସାମରେ

ସେଉଁ ଭଷା ନେଇ ପ୍ରବଳ ମାନେ ଆଜ ପଣ୍ଡିତ ପନ୍ଥ ସେପରି
ଏହି ରାଷ୍ଟ୍ରଭଷା ହିନ୍ଦୀକୁ ଶିଖଣ୍ଡୀ କରି ସେଠାରେ ବଙ୍ଗଳାର କଣ୍ଠ-
ଦାବା-ଳ ଉଦ୍‌ଭବନ କରି ପାରିଲେ ମାନେ ବଙ୍ଗଳାର
ନେତାମାନଙ୍କର ଗଲୁ ନିର୍ବାପିତ କରିପାରିଲେ ଏତାଦୃଶ ସମୃଦ୍ଧି-
ଶାଳୀ ବୁଦ୍ଧି ସମ୍ପନ୍ନ କ୍ଷଣଜନ୍ମା ପୁରୁଷ ବିଶ୍ୱବ୍ରହ୍ମାଣ୍ଡରେ—କ୍ଷମା
କରିବେ-ମାନେ ମୁଁ ସଂସ୍କୃତରେ କହୁନାହିଁ—ଓଡ଼ିଆରେ କହୁଛି—
ମାନେ ଆମ୍ଭମାନଙ୍କର ଆପଣ ଜାଣନ୍ତି ଆଜି ଏହି ଉତ୍କଳ ଭୂମିରେ
ମାନେ ଏହି ଓଡ଼ିଶାରେ ଏପରି କେହି ପୁଅ ନାହିଁ ମାନେ ଜନ୍ମଲଭି
କରିନାହିଁ ଆପଣ ଜାଣନ୍ତି ଯେ ଓଡ଼ିଆ ଭଷା ଗ୍ରାଡ଼ ବିଧାନ ସଭରେ
ଆପଣ ଜାଣନ୍ତି ଏପରିକି ବିଧାନ ସଭ ବାହାରେ ମାନେ ବଜାରରେ
ସଡ଼ଆରେ, ଗଳିରେ କନ୍ଦିରେ, ମାନେ ଗାଁରେ ଗହଳରେ ମାନେ
ଆପଣ ଜାଣନ୍ତି ଖାଲି ଗାଁ ଗହଳରେ କାହିଁକି ସହର ବଜାରରେ,
ଖାଲରେ, ଖମାଣରେ, ନଈରେ ନାଳରେ, ବଣରେ ଜଂଗଲରେ,
ପାହାଡ଼ରେ ପର୍ବତରେ, ଆଜି ସେପରିଭବରେ, ଆପଣମାନେ
ଜାଣନ୍ତି ମୁଁ ଇଂରାଜୀରେ ହିନ୍ଦୀରେ ମାନେ ଫାରସୀରେ ଜର୍ମାନୀରେ
ମାନେ ଖାଲି ଇଂରାଜୀ ଫାରସୀ କାହିଁକି ମାନେ ଆପଣମାନେ
ଜାଣନ୍ତି, ପୃଥିବୀରେ ଯେତେ ଯେତେ ପ୍ରସିଦ୍ଧ ଭଷା ଅଛି ସେ
ସବୁଥିରେ ମୁଁ ସେପରିଭବରେ ଆପଣ ଜାଣନ୍ତି ମୋତେ
ଦେଖିଛନ୍ତି, ମୋ କଥା ଶୁଣିଛନ୍ତି ମାନେ ସଂସ୍କୃତ ଆଦିଭଷା—ମୋର
ଭଷା ଠିକ୍ଏ ସାଧୁ ମାନେ ଆପଣମାନେ ଜାଣନ୍ତି ଆମର ଆଜି
ଚତୁର୍ଦ୍ଦିଗରେ ଅସାଧୁତା ଚାଲିଛି—ଦୁର୍ନୀତି ଦିନୁଦିନ ବଢ଼ି ଚାଲିଛି
ଆଜି ମଂତ୍ରୀଙ୍କଠାରୁ ଆରମ୍ଭ କରି ଚପରାସୀ ପିଅନ ଯାକେ ଆଜି
ସେପରି ଲାଞ୍ଚମିଛରେ ଭରି ଯାଇଛି ତାର କାରଣ ଆମ୍ଭେମାନେ
ଆଜି ଓଡ଼ିଆର ସାଧୁ ଭଷା ଭୁଲି ମାନେ ଆଜି ଆମ୍ଭମାନଙ୍କର ଭଷା

ଠିକ୍ ନାହିଁ—ଭବ ଠିକ୍ ନାହିଁ—ଆମ୍ଭେମାନେ ଆଜି ଆପଣ ଜାଣନ୍ତି ଯେଉଁ କୃତ୍ରିମ ସାହିତ୍ୟ ଓ ଭାଷା ସୃଷ୍ଟି କରୁଛୁ ଅଜ ଦେଶ ବିଦେଶର ବହୁ ଜ୍ଞାନୀ, ବିଜ୍ଞାନୀଙ୍କର ମୁଣ୍ଡ ଘୂରିଗଲାଣି । ଆଜି ବୈଜ୍ଞାନିକମାନେ ଗବେଷଣା କରି ପ୍ରମାଣ କରି ସାରିଲେଣି ଯେ ଏସବୁ ଅସାଧୁତାର କାରଣ କେବଳ ଭାଷା ନୁହେଁ—ପରମାଣୁ ବୋମାର ବିସ୍ଫୋରଣରେ ଆପଣ ଜାଣନ୍ତି ଯେଉଁ ସବୁ ବିପର୍ଯ୍ୟୟ ଘଟୁଛି ତାହା ମନୁଷ୍ୟର ମନ ଉପରେ, କର୍ମ ଉପରେ, ଭାଷା ଉପରେ ଏପରି ଅସୁସ୍ଥ ପ୍ରଭାବ ପକାଉଛି ଯେ ଆପଣମାନେ ଜାଣନ୍ତି ଆଜି ସାରା ଦେଶରେ ସେଥିପାଇଁ ନାନା ବିକ୍ଷୋଭ ମାନେ ଚାଷୀ ମୂଲିଆଙ୍କର ବିଦ୍ରୋହଠାରୁ ଆରମ୍ଭ କରି ଆଜି ଚତୁର୍ଦ୍ଦିଗରେ ଯେତେ ଯେତେ ବିପ୍ଳବ ଘଟି ଯାଉଛି—ଫରାସୀ ବିପ୍ଳବ—ଅକ୍ଟୋବର ବିପ୍ଳବ—ରକ୍ତ ବିପ୍ଳବ—ଏପରିକି ବନ୍ୟା ବିପ୍ଳବ – ଅନାବୃଷ୍ଟି ଅତି ବୃଷ୍ଟିପ୍ଳାବନ ଆଦି ବହୁ ଅଶାନ୍ତି ଉପଦ୍ରବ ଆପଣମାନେ ଜାଣନ୍ତି ଯାହା ଫଳରେ ଆଜି ଓଡ଼ିଶା ଦେଶରେ ବିରାଟ ଓଡ଼ିଶ ଉପଦ୍ରବ ଚାଲିଛି—ମାନେ ମାଗାଜିନ ଉଡିଟି ବିରୁଦ୍ଧରେ ଆଜି ଯେଉଁ ନୂତନ ଆଟମିକ ଚୁରପୋକ ଅଭିଯାନ ଆରମ୍ଭ ହୋଇଛି—ଆଜି ପୃଥିବୀରେ ଏପରି କୌଣସି ଶକ୍ତି ନାହିଁ ଯେ ଏହି ରକ୍ତବୀଜ ବଂଶକୁ ସମୂଳେ ନିପାତ କରି ଆଜି ଶାନ୍ତିର କପୋତମାନେ କାଉଫଡ଼ର ଚରମ ଲକ୍ଷ୍ୟ—ରୁଷ, ଆମେରିକାର ଘୋଷିତ ଲକ୍ଷ, ସାଧନ ନିମନ୍ତେ ପଣ୍ଡିତ ନେହେରୁ ଯେଉଁ ଦ୍ୱାର ଉଦ୍‌ଘାଟନ କରି ଦେଇଛନ୍ତି ମାନେ ଆପଣମାନେ ଜାଣନ୍ତି ଭାରତ ଉପରେ ଚାଇନା ଆକ୍ରମଣ କରିବା ସତ୍ତ୍ୱେ ଆଜି ଏ ଦେଶରେ ଯେଉଁ ପ୍ରବଳ ବନ୍ୟା ମାନେ ହିମାଳୟରେ ବହୁତ ଗରମ ହେବାରୁ ବରଫ ଟଳି ତରଳି ଯେପରିଭାବରେ ଆଜି ଘରଦ୍ୱାର ସବୁ ଭସି

ଯାଉଛନ୍ତି ଆପଣମାନେ ଜାଣନ୍ତି ତାହା ଫଳରେ ଆଜି ପଣ୍ଡିତ
ନେହେରୁ ଓଡ଼ିଶାର ଲୋକଙ୍କୁ ବୃଦ୍ଧାଙ୍ଗୁଷ୍ଠି ପ୍ରଦର୍ଶନ କରି ଯେପରି
ଏ ଦେଶର ଆବାଳ ବୃଦ୍ଧ ବନିତା ଯୁବତୀ ଯୁବକର ନୟନର ମଣି
ହୋଇଛନ୍ତି ତାହା ସତ୍ତ୍ୱେ ଆଜି ପଣ୍ଡିତ ନେହେରୁ ଯେ କି ତାଙ୍କ
ନାମ ପଛରୁ ପଣ୍ଡିତ ଶବ୍ଦ ଲୋପ କରି ଦେଇ ଆଜି ଶ୍ରୀ ନେହେରୁ
ହୋଇଛନ୍ତି ଆଜି ସାରା ଦେଶ ତାଙ୍କର ପତ୍ନୀ—ତାଙ୍କର ପୁଅ—କ୍ଷମା
କରିବେ ତାଙ୍କର କନ୍ୟାମାନେ ଆପଣ ଜାଣନ୍ତି ତାଙ୍କ କନ୍ୟାଙ୍କ
ପତି (ଜାମାତା) ମାନେ ଜାମାତା ଜାମାତା ଯେପରିଭାବରେ
ତାଙ୍କର ଦେଶପ୍ରୀତି ତାଙ୍କ ହୃଦୟର କିମ୍ବା ବିରୁଦ୍ଧ କରି ଶହୀଦ-
ହେଲେ ମାନେ ଅତି ଗଦ୍‌ଗଦ କଣ୍ଠରେ ପଣ୍ଡିତ ନେହେରୁ
ଆପଣମାନେ ଜାଣନ୍ତି ମିଳିତ ଜାତି ସଙ୍ଘରେ ଚୀନକୁ ସଭ୍ୟ
କରିବା ପାଇଁ ଏହି ଜାମାତା ବିୟୋଗକୁ ଭୁଲି ଏକ ଶୋକପ୍ରସ୍ତାବ
କରି ସମସ୍ତଙ୍କର ପ୍ରଶଂସା ଓ କରତାଳି—ଭାଜନ ହୋଇ ପାରିଛନ୍ତି
ତାହା କହିନ କାଳେ କେଉଁ ଦିନ ମାନେ କେଉଁ ମାସ ମାନେ
କେଉଁ ବର୍ଷ ତା ମାନେ ଆପଣ ଜାଣନ୍ତି ଦିନ କାହିଁ କି, ବର୍ଷ ବି
ନୁହେଁ ମାସ ବି ନୁହେ କେତେ ଶତାବ୍ଦୀ ବିତିଗଲାଣି ଏପରି
ଗରମ ଦେଖା ନଥିଲା—ଆଜି ଏହି ଗରମରେ ଆମ୍ଭମାନଙ୍କର
ଯେତେ ଝାଳର ବନ୍ୟା ବହିଗଲାଣି ତାହାଫଳରେ ଆଜି
ଚତୁର୍ଦ୍ଦିଗରେ ଯାନ ବାହନ ବନ୍ଦ ନ ହୋଇଥିଲେ ମନୁଷ୍ୟମାନେ
ହାହାକାର କରି ମରି ଯାଉଥାନ୍ତେ (କରତାଳି) ଭାଇମାନେ ଆଜି
ଆଜି ଆପଣମାନେ ଜାଣନ୍ତି ମାନେ ମୁଁ ଅଧିକ କଣ କହିବି—
ଆପଣମାନେ ସବୁ ବୁଝିବା ନର ଅଛନ୍ତି—ଆପଣମାନେ ନିଶ୍ଚୟ
ବୁଝିପାରୁଥିବେ ଯେ ପଣ୍ଡିତ ନେହେରୁ ଯାହା କରିଛନ୍ତି ଓଡ଼ିଶାର
ଏ ବନ୍ୟା କିଛି ନୁହେଁ—ଆମ୍ଭେମାନେ ଅଭ୍ୟସ୍ତ—ଏଥିରେ ପଣ୍ଡୁ

ପଡ଼ି ଅଧିକ ଫସଲ ହେବ—ଆପଣମାନେ ଘିଅ ନପାଇଲେ ଦୁଧ
ଦହି ଖାଇ ରହିବେ—ମାନେ ପଣ୍ଡିତ ନେହରୁଙ୍କ ବନ୍ଧୁତାର
ବନ୍ୟାରେ ଯେପରି ପଞ୍ଚବାର୍ଷିକ ଯୋଜନାମାନଙ୍କର ଦେଶରେ
ଘିଅ ମହୁ ଭସି ଯାଉଛି—ସେହିପରି ଓଡ଼ିଶାର ଏ ବନ୍ୟାରେ ମଧ୍ୟ
ଘିଅ ମହୁ ଭସିବ । ତେଣୁ ଆପଣମାନେ ଆଜି ଏକକଣ୍ଠ ହୋଇ
ଦେଶର ଶତ୍ରୁ ସମ୍ଭ୍ରାନ୍ତବାଦ—ରାଜାରାଜୁଡ଼ାଙ୍କ ଶାସନ ବିରୁଦ୍ଧରେ
ପ୍ରାଣପଣ କରି ମାନେ ଶହୀଦ୍ ଭବନରେ ଆପଣମାନଙ୍କର ଆତ୍ମା
ଯେପରି ଗ୍ରହିବିହାର କରିବ ସେଥିପାଇଁ ଆଜିଠାରୁ ଚମ୍ପାପତ୍ର ପନ୍ଥା
କରି ମାନେ ସନନ୍ଦ ରଖି ଉତ୍ତରାଧିକାର ସୂତ୍ରରେ ମାନେ
ସାମନ୍ତବାଦ ପରେ ପୁଞ୍ଜିବାଦ—ମହତାବ ବାଦପରେ ବିଜୁ ବାଦ୍
—ତାପରେ ଏକଛତ୍ର ସର୍ବହରା ବା ମନମୋହନବାଦ ମାନେ ଏହି
ଆମର ଦ୍ୱନ୍ଦ୍ୱାତ୍ମକ ଐତିହାସିକ ପ୍ରଗତିରେ ଆପଣମାନେ ସମସ୍ତେ
ଅଗ୍ରଣୀ ହୋଇ ଆଜି ଏହି ଦେଶକୁ ମାନେ ଏହି ଜାତିକୁ ଆଜି
ଆପଣମାନେ ଉଦ୍ଧାର କରନ୍ତୁ—ଏହି ମୋର ବିନୀତ ଅନୁରୋଧ—
ଜୟହିନ୍ଦ୍ ।

# ପୁରୁଷ ନାରୀ ଠାରୁ ଅଧିକ ଉଦାର

ମୁଁ ନିୟମ କରି କହୁଛି ଯାହା କହିବି, ସତ କହିବି । ମିଛ କହିବି ନାହିଁ । ଆପଣମାନେ ବିଶ୍ୱାସ କରନ୍ତୁ ମୁଁ ନାରୀ ନୁହେଁ, ପୁରୁଷ ।

ଆପଣମାନଙ୍କ ମଧ୍ୟରୁ ଅନେକ ନାରୀ ଥିବେ ! କେତେକ ପୁରୁଷ ମଧ୍ୟ ଥିବେ । ନାରୀମାନଙ୍କ ସଂଖ୍ୟା ଜନସୁମାରୀ ଅନୁସାରେ ବେଶି । ତଥାପି ରେଡ଼ିଓ ଶ୍ରୋତାମାନଙ୍କ ମଧ୍ୟରେ ନାରୀପୁରୁଷଙ୍କ ଊଣାଧିକ୍ୟ ନିର୍ଣ୍ଣୟ କରିହେବ ନାହିଁ । ସେଥିପାଇଁ ମୁଁ ଯାହା କହିବି, ନିରପେକ୍ଷ ଭାବରେ ନ୍ୟାଯ୍ୟ କହିବି । କାହାରି ପକ୍ଷ ନେବି ନାହିଁ । ତଥାପି ଆପଣମାନେ ବିଶ୍ୱାସ କରନ୍ତୁ, ମୁଁ କ୍ଲୀବଲିଙ୍ଗ ନୁହେଁ—ନାମବାଚକ ପୁଂଲିଙ୍ଗ ପଦ ।

ଆପଣମାନେ ସମସ୍ତେ ଜାଣନ୍ତି ବର୍ତ୍ତମାନ କଳିଯୁଗର କେତେ ସହସ୍ରତମ ଯୁଗ ଭୋଗ ହେଉଛି । ଅଧାଅଧି ହେଲାଣି । ତେଣୁ ଏହା

ଘୋର କଲି । ଜଗନ୍ନାଥ ମନ୍ଦିରରେ କଳିଯୁଗ ଭେଣ୍ଡ୍ରାର ପ୍ରତିମୂର୍ତ୍ତି ଦେଖିଥିବେ । ଓଡ଼ିଆ କାରିଗରର କି ସତ୍ୟ ଦର୍ଶନ ନାରୀ କଳ୍ପନା । ମାଇପ କାନ୍ଧ ଉପରେ । ମା ଚୁଟି ହାତରେ ଧରି ଚାଲିଛି । ଆପଣମାନେ ବିଶ୍ୱାସ କରନ୍ତୁ, ଆପଣମାନେ ସେଇ କଳିଯୁଗର ଭେଣ୍ଡା ଓ ଭେଣ୍ଡ୍ରୀ । ବିଚାର କରନ୍ତୁ ସମସ୍ତେ କଳିଯୁଗ ଭେଣ୍ଡ୍ରାର ଏ ଢଙ୍ଗ ଭିତରେ କଣ ଅଛି ? କେତେ ଉଦାର ନୁହେଁ ସେ । ସ୍ତ୍ରୀକୁ ସେ କାନ୍ଧରେ ବସାଇ ଚାଲିଛି । ମା ପ୍ରତି ବ୍ୟବହାର ଏ ସ୍ଥଳରେ ଆମର ବିଚାର୍ଯ୍ୟ ବିଷୟ ନୁହେଁ । କାରଣ ମା ମଧ୍ୟ ଦିନେ ଜଣକର ସ୍ତ୍ରୀ ହେଲାବେଳେ ସେଇ ଅଧିକାର ପାଇଥିବ । ଏଠାରେ ପୁରୁଷ ଠାରୁ ନାରୀ ଅଧିକ ଉଦାର କି ନାହିଁ, ଏ କଥା ପଡ଼ିଛି । ମା ଉଦାର କି ପୁଅ ଉଦାର ସେ କଥା ବିଚାର କରିବାର ନାହିଁ । ବିଚାର କଲେ ମଧ୍ୟ ସ୍ତ୍ରୀ ଯଦି ପୁରୁଷ ଠାରୁ ଅଧିକ ଉଦାର ହୋଇଥାନ୍ତା ତେବେ ସେ କଦାପି ପୁରୁଷ ଉପରେ ଚଢ଼ି ନଥାନ୍ତା ଏବଂ ବିଶେଷତଃ ଜଣେ ପୁରୁଷ ଆଉ ଏକ ହତଭାଗ୍ୟା ଜୀବର ଚୁଟି ଧରି ଚାଲିବାଟା ପରି ସହ୍ୟ ହୋଇ ନଥାନ୍ତା—ପୁରୁଷ ଏଠାରେ ଯେଉଁ ଆଚରଣ କରିଛି ତାହା ନିଜ ପାଇଁ ନୁହେଁ—ସ୍ତ୍ରୀର ସୁଖ ସଂପାଦନ ପାଇଁ । ସ୍ତ୍ରୀ ପାଇଁ ସେ କି ତ୍ୟାଗ ନ କରିଛି - ନିଜର ମା'କୁ ମଧ୍ୟ ବର୍ଜନ କରିବା ଠାରୁ ଅଧିକ ଲାଞ୍ଛନା ଦେଇଛି । କିନ୍ତୁ ପୁରୁଷର ଏହି ଉଦାରତା ବଳରେ ନାରୀ ସାମାନ୍ୟ କୃତଜ୍ଞତା ମଧ୍ୟ ସ୍ୱୀକାର ନକରି ମହା ଆନନ୍ଦରେ ଦିବ୍ୟ ଆରାମରେ କାନ୍ଧ ଉପରେ ବସି ଚାଲିଛି ।

କିନ୍ତୁ ଏଇଠି ଆଉ ଗୋଟିଏ କଥା ଆପଣମାନେ ବିଚାର କରନ୍ତୁ । ଏତେବେଳେଯାଏ ମୁଁ ପୁରୁଷ ପକ୍ଷର ଯୁକ୍ତି ବାଢ଼ୁଥିଲି । ଏବେ ନାରୀ ପକ୍ଷରୁ ଆର୍ଗୁମେଣ୍ଟ ଶୁଣନ୍ତୁ । ଯେଉଁ ସ୍ତ୍ରୀ ଆଜି ତାର

ଶାସ୍ତ୍ରର ତ୍ରୁଟି ଧରି ତାଙ୍କୁ ମୂର୍ଖଙ୍କରେ ବସାଇ ଦେବାକୁ ନିର୍ଦ୍ଦେଶ ଦେଇଛନ୍ତି—ବା ପୁରୁଷର ଏଭଳି ଆଚରଣରେ ମହାନନ୍ଦ ପ୍ରକାଶ କରୁଛନ୍ତି ସେ କଣ ଏତିକି ବୁଝି ପାରୁ ନାହାଁନ୍ତି ଯେ—ସେ ପୁରୁଷ ନିକଟ ଭବିଷ୍ୟତରେ ତାଙ୍କୁ ଏହିଭଳି ମାନ୍ତ୍ରିଙ୍କର ନିର୍ଯାତନା ଭୋଗିବାର ଦୁର୍ଯୋଗ ଭିତରକୁ ଟାଣି ଆଣିବ । ତଥାପି ସେ ନିଜର ଭବିଷ୍ୟତ ପ୍ରତି ଭ୍ରୂକ୍ଷେପ ନକରି ପୁରୁଷକୁ ତାର କର୍ମ କରି ଯିବାରେ କୌଣସି ବାଧା ଦେଉନାହାଁନ୍ତି । ଏହା କଣ ଅଳ୍ପ ଉଦାରତା ? ପୁରୁଷ ପକ୍ଷରେ ଏହା କିନ୍ତୁ ଉଦାରତା ନୁହେଁ, ଦାରତା ।

ଆପଣମାନେ ବିଶ୍ୱାସ କରନ୍ତୁ ମୁଁ କହୁଛି । ମୋର ସ୍ତ୍ରୀ ଶ୍ରୀମାଡ଼ ଖାଇବାର ଭୟ ସେହିଠା ନ ଥିଲେ ବି କହୁଛି ବିଚ୍ଛେଦ ମକଦ୍ଦମାରେ ମୁଁ ଦେଇ ହେବାର ଆଶଙ୍କା ରହିଛି । ସେ ଭୟରେ ମୁଁ ଏହା ଲେଖୁନାହିଁ । ମୁଁ ଯାହା କହିବି ସତ କହିବି, ଏହି ନୀତିରେ ଲେଖୁଛି ।

ଉଦାର ଶବ୍ଦର ବ୍ୟୁତ୍ପତ୍ତି ହେଲା ଉତ୍ + ଦାର = ଉଦାର— ଅପଭ୍ରଂଶରେ ଉଦାର, ଅର୍ଥାତ୍ ଦାରର ଉପରେ । ଅତଏବ ଦାର ମାନେ ଅନୁଦାର—ଏହି ଅନୁଦାର ଦାରଙ୍କୁ ପଛରେ ବା ତଳେ ରଖି ଯେ ଉପରକୁ ଉଠିଲା ବା ଆଗେଇ ଗଲା ସେ ହେଲା ଉଦାର ।

ସାଧାରଣତଃ କଥାରେ କୁହାଯାଏ ସ୍ତ୍ରୀବୁଦ୍ଧି ପ୍ରଳୟଙ୍କରୀ । ମାଇପ ବୁଦ୍ଧିରେ ଜଗନ୍ନାଥେ ଖଣ୍ଡିଆ—ମାଇପଙ୍କ କଥାରେ ଘର ଘଙ୍ଗେ । ମାତ୍ର ମୁଁ କହିବ ଏସବୁ ପୁରୁଷଙ୍କ ପ୍ରବଚନ । ମାଇପଙ୍କୁ ଛୋଟ କରିବା ପାଇଁ ଜାଣି ଶୁଣି ଏଭଳି କେତେଗୁଡ଼ାଏ ଅବାସ୍ତବ ଉଦ୍‌ଭାବନ କରିଛନ୍ତି ପୁରୁଷ ମଣିଷ ।

ଆଚ୍ଛା, ସେହି ଜଗନ୍ନାଥ ମହାପ୍ରଭୁଙ୍କ କଥା ଧରାଯାଉ । ସେଠି ଗୁଣ୍ଡିଚା ଉଦାର ନା ଇନ୍ଦ୍ରଦ୍ୟୁମ୍ନ ଉଦାର । ଜଣେ କାରିଗର ଅଖିଆ ଅପିଆ ଏତେ ଦିନ କାଳ ଅନ୍ଧାର ଘର ଭିତରେ ପଶି କାମ କରୁଛି । ପୁରୁଷ ଇନ୍ଦ୍ରଦ୍ୟୁମ୍ନ ନିଜର ପ୍ରତିଷ୍ଠା ପାଇଁ ଗୋଟିଏ ଲୋକକୁ ବଳି ଦେବାକୁ ଉଦ୍ୟତ । ସେଠା ସ୍ତ୍ରୀ ବା ନାରୀ ଗୁଣ୍ଡିଚା ଯଦି ନିଜର ପ୍ରତିଷ୍ଠାକୁ ଭ୍ରୂକ୍ଷେପ ନକରି କାଠ ଖୋଲିବାକୁ ଜିଦ୍ ଧରି ବସିଲେ ତେବେ ତାଙ୍କର ବୁଦ୍ଧି ଯାହା ହଉ ହୃଦୟବତ୍ତା ପ୍ରକାଶ ପାଇଲା ନାହିଁକି ? ଉଦାରତାଟା ହୃଦୟର ବସ୍ତୁ ବୁଦ୍ଧିର ନୁହେଁ । ପୁଣି ବୁଦ୍ଧି ଦିଗରୁ ଦେଖିବାକୁ ଗଲେ ମଧ୍ୟ ଗୁଣ୍ଡିଚା କୌଣସି ନିର୍ବୁଦ୍ଧିତା ବା ଦୁର୍ବୁଦ୍ଧିର କାର୍ଯ୍ୟ କରିନାହାନ୍ତି । କାରଣ ଜଗନ୍ନାଥ ମୂର୍ତ୍ତିକଳ୍ପନା ଯଦି ସମ୍ପୂର୍ଣ୍ଣ ହୋଇଥାନ୍ତା ତେବେ ତାଙ୍କୁ ବିଭିନ୍ନ ଭକ୍ତ ଭିନ୍ନ ଭିନ୍ନ ଇଷ୍ଟ କଳ୍ପନାରେ ପୂଜାକରିବାର ସୁଯୋଗ ପାଇ ନଥାନ୍ତେ । ତେଣୁ ଆଜିର ଏଇ ବିରାଟ ପ୍ରସରଣ କ୍ଷମ ଅସୀମ କଳ୍ପନାସ୍ପର୍ଶୀ ମୂର୍ତ୍ତି କେବଳ ଗୁଣ୍ଡିଚାଙ୍କ ଉଦାରତା ଯୋଗୁ ସମ୍ଭବ ହୋଇ ପାରିଛି । ଯଦି କୁହାଯାଏ ଯେ ଗୁଣ୍ଡିଚା ବୁଦ୍ଧିରୁ ଜଗନ୍ନାଥ ଖଣ୍ଡିଆ ତେବେ ଏଥିରେ ଦୁର୍ବୁଦ୍ଧି ବେଶି କାହାର ? ବୁଦ୍ଧିହୀନ ଲୋକ ବା ବୁଦ୍ଧିହୀନ ଲୋକର ବିଚାର ଦ୍ୱାରା ପ୍ରଲୋଭିତ ବ୍ୟକ୍ତି ଦୁହିଙ୍କ ମଧ୍ୟରୁ ଅଧିକ ଦୁର୍ବୁଦ୍ଧି ସମ୍ପନ୍ନ ଲୋକ କିଏ ଆପଣ ବିଚାର କରିବେ । ଖରାପ ମାଇପ ଠାରୁ ଖରାପ ମାଇକିନିଆର ବୋଲକରା ଘଇତା ଅଧିକ ମାରାତ୍ମକ । ଇନ୍ଦ୍ରଦ୍ୟୁମ୍ନ ମାଇପ କଥାରେ ଭୁଲି ନଥିଲେ ଜଗନ୍ନାଥ ଖଣ୍ଡିଆ ହୋଇ ନଥାନ୍ତେ । ତେଣୁ ଇନ୍ଦ୍ରଦ୍ୟୁମ୍ନଙ୍କର ଥିଲା ଦାରତା ଓ ଗୁଣ୍ଡିଚାଙ୍କର ଉଦାରତା ।

ଠିକ୍ ସେଇ ସୂତ୍ରରେ ବିଚାର କଲେ ଦେଖାଯିବ ଯେ ପ୍ରକୃତରେ ମାଇପ କଥାରେ ଘର ଭାଙ୍ଗେ ନାହିଁ ଯେ ଘରଭାଙ୍ଗୁଆଟୀ ମାଇପଙ୍କ କଥା ଶୁଣି ଅଣପୁରୁଷ। ପୁରୁଷମାନେଇ ଘର ଭାଙ୍ଗନ୍ତି । ମାଇପେ ଯେତେବେଳେ ଭିନେ ହେବାପାଇଁ କହନ୍ତି—ସେତେ· ·ବେଳେ ସେ ନିଜର ସୁଖ ସ୍ୱାଚ୍ଛନ୍ଦ ପାଇଁ ବୁଦ୍ଧି ଦିଅନ୍ତି ନାହିଁ— ପୁଅ ଝିଅଙ୍କ ସୁବିଧାପାଇଁ ସେ ବେଶିଠା ଭିନେ ହେବାପାଇଁ ଜିଦ୍ ଧରନ୍ତି । କିନ୍ତୁ ପୁରୁଷ ଯେତେବେଳେ ସ୍ତ୍ରୀ କଥା ଶୁଣି ଭିନେ ହୁଏ । ସେତେବେଳେ ସେ କେବଳ ଗୋଟିଏ ଲୋକ ଯିଏ ପାଖରେ ଶୁଏ, କାନରେ କୁହେ, ତା କଥାକୁ ଅନ୍ୟଥା ନକରି ଅତି ସଙ୍କୀର୍ଣ୍ଣମନା ହୋଇ ଘର ଭାଙ୍ଗେ, ଭିନେ ହୁଏ । ଏଠି ମଧ୍ୟ ପୁରୁଷର ଦାରତା ଯୋଗୁଁ ଘର ଭାଙ୍ଗେ । ନାରୀର ଉଦାରତା ଏହାଦ୍ୱାରା ଅପ୍ରମାଣିତ ହୋଇ ନପାରେ ।

ଆପଣ ବିଶ୍ୱାସ କରନ୍ତୁ ମୋ ସ୍ତ୍ରୀ ଗଙ୍ଗା ବୋଲି କହିଲେ ଥିବ, ଗାଙ୍ଗୀ ବୋଲି କହିଲେ·କାଶୀ ବାରାଣସୀ ଯିବ ଧରଣର ସ୍ତ୍ରୀ ନହେଁ । ତେଣୁ ମୁଁ ମଧ୍ୟ ଦାରତାବଶତଃ ଏପରି ଯୁକ୍ତି ବାଢ଼ୁନାହିଁ । ମୁଁ ସ୍ତ୍ରୀମାନଙ୍କ ବିରୋଧରେ ଯେତେ କହିଲେ ବି ଆମର ସେ, ବା ଆମର ଘରଆଡ଼େ, ଅବା ମୋର ଗୋପାଳିଆ ·ବୋଉ, କିମ୍ବା ଅମକ ଦାସଙ୍କ ଝିଅ, କିମ୍ବା ମହାପାତ୍ର ଘର ବୋହୂ ଏତେ ଅନୁଦାର ନୁହନ୍ତି ଯେ ମୋର ଏହି ଉକ୍ତି+ଦାରତା ଦ୍ୱାରା ବ୍ୟଥିତ ହେବେ ।

ଘରକଥା ପଦାରେ ପକାଇବାର ନୁହେଁ । ତଥାପି ଏ ଅଭିଜ୍ଞତା ପ୍ରତ୍ୟେକ ବିବାହିତ ଲୋକର ଥିବ ଏବଂ ପ୍ରତ୍ୟେକ ·ଅବିବାହିତ ଲୋକ ଜାଣିବା ଉଚିତ ବୋଲି ମୁଁ ସାମାନ୍ୟ ଅଶ୍ଳୀଳତା ·ହେବାର ଭୟ ଥିଲେମଧ୍ୟ କ୍ଷମାଭିକ୍ଷାପୂର୍ବକ କହୁଛି ସମସ୍ତେ ଶୁଣନ୍ତୁ

ଏବଂ ବିଶ୍ୱାସ କରନ୍ତୁ ଯେ ଆମର ସ୍ତ୍ରୀ-ପୁରୁଷ ଭିତରେ ସଂପର୍କ ଯଥା ରାମସ୍ୟ ସୀତା ନୁହେଁ କିମ୍ବା ରାବଣସ୍ୟ ମନ୍ଦୋଦରୀ ନୁହେଁ—ଆମର ସଂପର୍କ ଯଥା ନଳରାଜସ୍ୟ ଦମୟନ୍ତୀ । ଆପଣମାନେ ବିଶ୍ୱାସ କରନ୍ତୁ ! ତେଣୁ ମୁଁ ଯାହା କହୁଛି ସତ କହୁଛି:—

ମୁଁ ବିଭାହେବା ପୂର୍ବରୁ ବହୁକୁମାରୀ ଏପରିକି ଅକୁମାରୀ ସୁକୁମାରୀମାନଙ୍କ ସହିତ ବହୁ ପରୀଳାପ ଚାଲିଥିଲି । ବିବାହ ପରେ ହଠାତ୍ ସେସବୁ ପରିଚ୍ଛେଦର ସମାପ୍ତି ଘଟିଛି । କିନ୍ତୁ ଆଜି ଏକ ପରିସ୍ଥିତିର ପରିବର୍ତ୍ତନ ଲକ୍ଷିତ ହେଉଅଛି ଯେ ବିବାହପୂର୍ବରୁ ଯେପରି କୌଣସି ସ୍ତ୍ରୀଲିଙ୍ଗ ବାଚକ ଶବ୍ଦର ସାନ୍ନିଧ୍ୟ ପାଇବା ମୋ ପକ୍ଷରେ କ୍ୱଚିତ୍ ଅଭିଜ୍ଞତା ଥିଲି, ବିବାହ ପରେ ହଠାତ୍ ସେ ଅବସ୍ଥାର ଅବସାନ ଘଟିଛି । ଏବଂ ପର ସ୍ତ୍ରୀ ବା ପର କନ୍ୟାମାନଙ୍କ ସହିତ ଅବାଧ ମିଶ୍ରଣ ପାଇଁ ଯେପରି ସମାଜ ମତେ ଏକ ସର୍ଟିଫିକେଟ୍ ବା ଲାଇସେନ୍ସ ଦେଇ ଦେଇଛନ୍ତି । ଏହାର କାରଣ ଯାହାହେଉ ପଛେ ଏବଂ ଏହା ନାରୀ ଚରିତ୍ରର ଉଦାରତା ପ୍ରକାଶ ପାଉଛି କି ଅନୁଦାରତା ପ୍ରକାଶ ପାଉଛି ତାହାର ବିଚାରଭାର ମୁଁ ଉଭୟ ଲିଙ୍ଗର ଶ୍ରୋତାମାନଙ୍କ ଉପରେ ଛାଡ଼ି ଦେଉଛି । ଅବଶ୍ୟ ଅବଶିଷ୍ଟ ଲିଙ୍ଗବାଚକ ବ୍ୟକ୍ତିମାନଙ୍କର ବିଚାର କରିବାରେ କୌଣସି ବାଧା ନାହିଁ ।

ସେ ଯାହାହେଉ ବିବାହ ପୂର୍ବରୁ ଯେତେ ଯେତେ ପତ୍ର ମୋ ଫାଇଲରେ ଥିଲି ସେ ସବୁ ଆମର ପିଲପିଲି ପଢ଼ିଛନ୍ତି । ଏଠାରେ ପିଲପିଲିର ଅର୍ଥ ପୁଅଝିଅ ନୁହନ୍ତି । ଆପଣଙ୍କ ପିଲପିଲି ସାଙ୍ଗରେ ଅଛନ୍ତି କି ? ଯେଉଁ ଅର୍ଥରେ କୁହାଯାଏ ସେଇ ଅର୍ଥରେ ବୁଝିବେ । ଏବଂ ବିବାହ ପରେ ଯେଉଁ ମହିଳାମାନେ ମତେ ବାନ୍ଧବ ଦୃଷ୍ଟିରେ ଦେଖିବାକୁ

ଆସୁଛନ୍ତି । ସେମାନଙ୍କୁ ମଧ୍ୟ ମିସେସ୍—ମହାପାପ ଦେଖିଛନ୍ତି । ଏ ଉଭୟ ଶ୍ରେଣୀର ମହିଳାମାନଙ୍କ ମଧ୍ୟରୁ ଅନେକ ବା କେତେକଙ୍କ ଘର ମୋର ଯେପରି ସ୍ପଷ୍ଟ ଅନୁମାନ କରିବାର ସୁଯୋଗ ଘଟିଛି ତାଙ୍କର ମଧ୍ୟ ସେପରି ଅନୁମାନ କଲାଭଳିଆ ବୁଦ୍ଧି ଯେ ନାହିଁ ତାହା ଅନ୍ତତଃ ତାଙ୍କ ଉକ୍ତି ପ୍ରମାଣ ଦେଉନାହିଁ । ତଥାପି ଦିନକର ଦିନେ ସେ ଏମାନଙ୍କୁ ଲଗାଇ ମତେ କୌଣସି ସନ୍ଦେହାତ୍ମକ ପ୍ରଶ୍ନ ପଚାରି ନାହାନ୍ତି । କିନ୍ତୁ ଆଧୁନିକାମାନଙ୍କର ଅଭିଧାନରେ ଚରିତ୍ରର ଯେଉଁ ନୂଆ ସୀମାରେଖା ଟଣା ହୋଇ ଟୀକା ଦିଆଯାଇଛି, ସେ ଦୃଷ୍ଟିରୁ ତାଙ୍କ ନାମରେ ଆସିଥିବା ପ୍ରତ୍ୟେକ ପୁରୁଷ ହସ୍ତଲିଖିତ ପତ୍ର ଓ ପ୍ରତ୍ୟେକ ଦୂର ସମ୍ପର୍କୀୟ ଆଗତ ବନ୍ଧୁମାନଙ୍କ ପ୍ରତି ସ୍ୱତଃ ମୋର କପରି ଏକ ଦୃଷ୍ଟିଭଙ୍ଗୀ ସୃଷ୍ଟି ହୁଏ । ଅତଏବ ତାଙ୍କ ମତରେ ପୁରୁଷଠାରୁ ନାରୀ ଅଧିକ ଉଦାର । ଏହା ଏକୁଟିଆ ମୋ କଥା ନୁହେଁ । ଆପଣମାନେ ନିଜ ନିଜ ଛାତିରେ ହାତ ରଖି ପଚାରନ୍ତୁ- ଯେତେ ପୁରୁଷ ଶ୍ରୋତା ଅଛନ୍ତି ବା ପ୍ରେମିକ ଶ୍ରୋତା ଅଛନ୍ତି— ଆପଣଙ୍କୁ ଆପଣମାନଙ୍କ ସ୍ତ୍ରୀ ବା ପ୍ରେମିକା ଯେତେ ସ୍ୱାଧୀନତା ଦେଇଛନ୍ତି ଆପଣମାନେ ସେତିକି ସ୍ୱେଚ୍ଛା ଚରଣକୁ ସମର୍ଥନ କରି ପାରିବେ କି ?

ଦିନେ ଏଇ ପ୍ରସଙ୍ଗ ନେଇ ମୋର ଓ ଗୃହିଣୀଙ୍କ ମଧ୍ୟରେ ଯୁକ୍ତି ଚାଲିଲା । ସେ କହିଲେ—ବିବାହରେ 'ଯଥା ରାମଚନ୍ଦ୍ରସ୍ୟ ସୀତା' ଶ୍ଲୋକ ପଢ଼ିବା ଉଚିତ ନୁହେଁ । କାରଣ ରାମଚନ୍ଦ୍ର ଅନୁଦାର— ଅଗ୍ନି ପରୀକ୍ଷା ପରେ ମଧ୍ୟ ପର କଥାରେ ସୀତାଙ୍କୁ ବନବାସ ଦେଲେ । ମୁଁ କହିଲି ରାବଣସ୍ୟ ମନ୍ଦୋଦରୀ ବା ସୁଗ୍ରୀବସ୍ୟ ତାରା ରହିବା ଉଚିତ କି ନୁହେଁ—ସେ ନିରୁତ୍ତର ହୋଇଗଲେ—ମୁଁ କହିଲି ଆଦୌ ଉଚିତ ନୁହେଁ । ମନ୍ଦୋଦରୀ ତ ରାବଣଙ୍କ ପରେ

ବିଭୀଷଣଙ୍କୁ ବଶ ହେଲେ । ପୁଣି ବାଳୀଙ୍କର ତାରା ନ ହୋଇ ସୁଗ୍ରୀବଙ୍କର ତାରା ହେବାର ଅର୍ଥ ସ୍ୱାମୀ ମଲାପରେ ଅନ୍ୟ ସ୍ୱାମୀ କରିବାର ପ୍ରରୋଚନା ନୁହେଁ ?—ସେ ତଥାପି ନୀରବ—

ମୁଁ ପୁଣି କହିଲି ଏଇଠି ତ ପୁରୁଷ ଋଷିମାନଙ୍କର ଉଦାରତା ପ୍ରକାଶ ପାଉଛି । ସେମାନେ ନାରୀମାନଙ୍କୁ ଅନ୍ୟ ପୁରୁଷ କରିବାରେ କୌଣସି ବାଧା ରଖି ନାହାନ୍ତି । ତାପରେ ଆମର ସାଲିସ୍ ହେଲା ଯେ ଏ ଦୁଇଟା ଯାକ ରହିବା ଅନୁଚିତ । ତେଣୁ ସେହି ଦିନଠୁଁ ଆମର ସଂପର୍କ ହେଲା ଯଥା—ନଳରାଜସ୍ୟ ଦମୟନ୍ତୀ ।

କିନ୍ତୁ ବାସ୍ତବରେ ନାରୀ ଓ ପୁରୁଷ କେହି ସମୂହଭାବରେ ଗରିଷ୍ଠ ବା ଲଘିଷ୍ଠ ସାଧାରଣରେ ଅଧିକ ବା ଊଣା ଉଦାର ବା ଅନୁଦାର ନୁହନ୍ତି । ଉଦାରତା ଓ ଅନୁଦାରତା ପୁରୁଷ ଓ ନାରୀଙ୍କର ଗୁଣାଧିକ୍ୟ ନିର୍ଭର କରେ, ବ୍ୟକ୍ତି ଭେଦରେ ସ୍ଥାନ ଓ କାଳ ଭେଦରେ ମଧ୍ୟ, ମୋଠାରୁ ମୋ ସ୍ତ୍ରୀ ଅଧିକ ଉଦାର ହେଲେ ବୋଲି ଆପଣଙ୍କଠାରୁ ଆପଣଙ୍କ ସ୍ତ୍ରୀ ଅଧିକ ନ ହୋଇ ପାରନ୍ତି । ଭାରତର ସ୍ତ୍ରୀ ଅଧିକ ଉଦାର ହେଲେ ବୋଲି ଇଂଲଣ୍ଡର ସ୍ତ୍ରୀ ଅଧିକ ଉଦାର ହେବାଟା ସ୍ୱତଃ ସିଦ୍ଧ ନୁହେଁ । କିମ୍ବା ପୁରାଣ ଯୁଗରେ ପୁରୁଷ ଅଧିକ ଉଦାର ଥିଲେ ବୋଲି ଯେ ଏ କଳିକାଳରେ ଠିକ୍ ସେହି ମାନସିକ ଅବସ୍ଥା ଅକ୍ଷୁନ୍ନ ରହିବ—ଏଥିର କୌଣସି ଯୁକ୍ତିଯୁକ୍ତତା ନାହିଁ ।

ଶେଷରେ ମୋର ଏତିକି ଅନୁରୋଧ—ଏ ଯୁଗର ଧର୍ମ ବା ସଭ୍ୟତା ଅନୁସାରେ ଆପଣ ଓ ଆପଣଙ୍କ ସ୍ତ୍ରୀ ମଧ୍ୟରେ ଯିଏ ଅଧିକ ଉଦାର ହେଉ ବା ନ ହେଉ ଅନ୍ତତଃ ପ୍ରତ୍ୟେକ ପ୍ରତ୍ୟେକଙ୍କ ଠାରୁ ଅଧିକ ଉଦାର ବୋଲି ବାହାରକୁ ଦେଖେଇ ହବା । ତା ନ ହେଲେ ଆପଣ ଅସଂସ୍କୃତ—uncultured.

---

# ନେତା ଓ ନାମ

ଆପଣ ନେତା ହେବାକୁ ଗୃହାନ୍ତି । ସେଥିପାଇଁ ଅନେକ ଜିନିସ ଲୋଡ଼ା । ତା' ଭିତରୁ ସବୁଠାରୁ ଅଧିକ ଆବଶ୍ୟକ— 'ନାମ' । ଅର୍ଥାତ୍ ଆପଣଙ୍କ ନାମଟା ସମସ୍ତେ ଜାଣିବା ଦରକାର । ନାମଟା ସମସ୍ତଙ୍କୁ ଜଣାଇବାର ଉପାୟ ନାନାପ୍ରକାର ହୋଇପାରେ । ମାତ୍ର ଲୋକେ ନାମଟା ନ ଜାଣିଥିଲେ ଆପଣ କଦାପି ଭୋଟ୍ ପାଇପାରିବେ ନାହିଁ । ଜଣେ ସାଧୁ ଯଦି ନିଟବେଳାରେ ବସି ଈଶ୍ୱର ଉପାସନା କରୁ କରୁ ହଠାତ୍ ନେତା ହେବାକୁ ମନକରେ ତେବେ ଈଶ୍ୱର ନିଜେ ବରଦେଲେ ବି ସେ ନେତା ହୋଇପାରେ । ମାତ୍ର ଜଣେ ନାମଜାଦା ଚୋର ବା ଡକାଏତ ଯଦି ନେତା ହେବାକୁ ଇଚ୍ଛାକରେ ତେବେ ସେ ଅକ୍ଲେଶରେ ଭୋଟ-ସାଗର ପାର ହୋଇପାରେ—ଏଇ ନାମ ତରଣୀକୁ ଧରି ।

କଳି ଯୁଗରେ ଯଦି ତମେ ଉଦ୍ଧାର ହୋଇବ, ପରିତ୍ରାଣ ହୋଇବ, ତେବେ ଅବଶ୍ୟ ତୁମକୁ ନେତା ହେବାକୁ ପଡ଼ିବ । କାରଣ ସେଥିପାଇଁ ଶାସ୍ତ୍ରରେ କହିଛନ୍ତି—ହରେର୍ନାମ—ହରେର୍ନାମ—ହରେର୍ନାମୈବ କେବଳମ୍—କଲୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା । ହରେ ଶବ୍ଦର ଅର୍ଥ ନେତା । ନେତା ଅର୍ଥ ଯିଏ ନିଏ—ହରେ ଅର୍ଥ ଯିଏ ହରଣ କରେ । ତେଣୁ ନେତା ନାମ (ହରେକୃଷ୍ଣ ନୁହ କେହି ଦୟାକରି ନ ବୁଝନ୍ତୁ) ଛଡ଼ା ଅନ୍ୟଗତି ନାହିଁ ।

କେବଳ ନିଜ ନାମକୁ ସମସ୍ତେ ଜାଣିଲେ ହେବନାହିଁ, ଆପଣ ମଧ୍ୟ ସମସ୍ତଙ୍କ ନାମ ଜାଣିବା ଦରକାର । ଏଇ ନିଜ ନାମକୁ ସମସ୍ତଙ୍କ ନିକଟରେ ଜଣାଇବା ପାଇଁ ଏବଂ ସମସ୍ତଙ୍କ ନାମକୁ ଆପଣ ନିଜେ ଜାଣିବା ପାଇଁ ଗୋଟିଏ ଉତ୍ତମ ଉପାୟ ହେଉଛି—ଗୋଟିଏ ଦୈନିକ ସମ୍ବାଦପତ୍ର ପ୍ରକାଶ । ପ୍ରମାଣ ସ୍ୱରୂପ ମିଳିତ ମନ୍ତ୍ରିମଣ୍ଡଳର ପ୍ରଥମ ସୋପାନରେ ଯେଉଁମାନେ ଥିଲେ ସେ ତିନିଜଣଯାକ ତିନୋଟି ଦୈନିକ କାଗଜର ମାଲିକ । ଯାହାର କାଗଜ ଥିବ, ତା'ର କାଶିଲା, ଛିଙ୍କିଲା, ହଗିଲା, ମୂତିଲାଯାଏ କାଗଜରେ ବାହାରିବ । ତେଣୁ ସମସ୍ତେ ସବୁଦିନେ ସେତକ ପଢ଼ିବା ଫଳରେ ତାଙ୍କ ନାମ ସମସ୍ତଙ୍କୁ ଜଣା ହୋଇଯାଏ । ଆଉ ଅନେକ ଲୋକଙ୍କ ନାମ ମଧ୍ୟ ତାଙ୍କୁ ଜଣାହୁଏ । କେବଳ ଯେ ଖବରକାଗଜରେ ଯେଉଁମାନଙ୍କ ନାମ ବାହାରେ ସେମାନଙ୍କୁ ସେ ଜାଣନ୍ତି ବା ଯେଉଁମାନେ ସମ୍ବାଦଦାତା ହୁଅନ୍ତି ତାଙ୍କ ନାମ ଜାଣିବାର ସୁବିଧା ହୁଏ, ତା'ଛଡ଼ା ନୁହେଁ ଅସଂଖ୍ୟ ଗ୍ରାହକମାନଙ୍କ ନାମ ମଧ୍ୟ ଜାଣିବାର ସୁବିଧା ହୁଏ । ବିଶେଷତଃ ଯେଉଁ କାଗଜରେ ଠିକଣା ସବୁ ଛପା ହୋଇଥାଏ, ସେ ଠିକଣା-ଲୋକଙ୍କ ନାମ ତ ସଂପାଦକ ବା ମାଲିକ ନିଶ୍ଚୟ

ଜାଣିଥିବେ । ମୁଁ ଜଣେ ଭଦ୍ରଲୋକଙ୍କଠୁଁ ଶୁଣିଛି । ମଫସଲରେ ଜଣେ ପୁରୁଣାକାଳିଆ ରଜା ବା ବଡ଼ ଜମିଦାରଙ୍କ ଘରେ ମୁଁ ଦିନୁଟିଏ ରହିବାର ସୌଭାଗ୍ୟ ଲାଭ କରିଥିଲି । ତାଙ୍କ ସହିତ ଆଳାପ ହେଉଁ ହେଉଁ ସେ କହି ଉଠିଲେ—ଆପଣ ଜାଣନ୍ତି, ମୋର ଅମୃତବଜାର ଷ୍ଟେଟ୍ସମ୍ୟାନ୍, ହିନ୍ଦୁ ଟାଇମ୍ସ, ଡେଲିହେରାଲ୍ଡ଼ ଇତ୍ୟାଦି ବହୁ ସମ୍ପାଦକଙ୍କ ସହିତ ଜଣାଶୁଣା । ମୋର ଟିକିଏ କୌତୂହଳ ହେଲା । ପଚାରିଲି—କିମିତି ପରିଚୟ ହେଲା ? ରଜା କହିଲେ—ତା' ଠିକ୍ କହି ପାରୁନାହିଁ—ତେବେ ସେମାନେ ମୋ ପାଖକୁ ପ୍ରତିବର୍ଷ ଚିଠି ଦିଅନ୍ତି । ଯେତେବେଳେ ସେମାନେ ଯେଉଁ ଅନୁରୋଧ କରନ୍ତି, ମୁଁ ତାହା ରକ୍ଷା କରିଥାଏ ।

ପଚାରିଲି—କିଭଳିଆ ଅନୁରୋଧ କରନ୍ତି ?

ରଜା ଉତ୍ତରଦେଲେ—ଏଇ ଧରନ୍ତୁ ଆପଣଙ୍କ ଚାନ୍ଦା ସରିଗଲା—ଚାନ୍ଦା ପଠାନ୍ତୁ—ଏମିତି ସବୁ ।

ମୁଁ ଜେରାକଲି—ଆଉ ଆଉ କ'ଣ ସବୁ ଲେଖନ୍ତି ?

ଉତ୍ତର ପାଇଲି—ଅନେକ କଥା । ଯଥା—ଆପଣଙ୍କ ଚନ୍ଦା ନିମନ୍ତେ ଧନ୍ୟବାଦ, ଆପଣଙ୍କ ଆଦେଶ ଅପେକ୍ଷାରେ ରହିଲି—ଆପଣଙ୍କ ଠିକଣା ସଂଶୋଧନ ହେଲା ଇତ୍ୟାଦି । ଏତକ କହି ରଜା ବାହାଦୁର ଅଧିକ ଉତ୍ସାହ ଧରି କହିଲେ—ଆଜ୍ଞା ଜାଣନ୍ତି ପ୍ରତିଦିନ ମୋ ନାମ ଛପାଇ ସେ କାଗଜ ଉପରେ ପେଷ୍ଟ କରି ପଠାନ୍ତି । ଆପଣ ଦେଖିଥିବେ ଆମେ ଗୋଟିଏ ଗୋଟିଏ ଲେଟରହେଡ୍‌ରେ ନାମ ଛପାଇବାକୁ ଦଶ ବାରଟଙ୍କା ଗୁଣିଦେଉଁ—କିନ୍ତୁ ତାଙ୍କର ମୋତେ ଏତେ ଖାତିର ଯେ ଦିନ୍ ଦିନ୍ ନାମ ଛାପି ପଠେଇ ଦଉଛନ୍ତି ।

ଏଥର ମୁଁ ବୁଝିଗଲି—କପରି ସମ୍ପାଦକ ବା କାଗଜ ମାଲିକମାନେ ତାଙ୍କର ଗ୍ରାହକମାନଙ୍କୁ ଜାଣନ୍ତି। ଆପଣମାନେ ମଧ୍ୟ ବୁଝିସାରିବେଣି।

ମୁଁ ଶୁଣିଛି—ଯେଉଁମାନେ ଗାନ୍ଧିଜୀଙ୍କ ସମ୍ପର୍କରେ ଆସିଥିବେ ସେମାନେ ସମସ୍ତେ ଜାଣିଥିବେ ଯାହାକୁ ଥରେ ଦେଖିଥିବେ ଓ ନାମ ଶୁଣିଥିବେ, ସେ ଜୀବନଯାକ ଆଉ ତାକୁ ଭୁଲିବେ ନାହିଁ। ନାମ ସେ କପରି ମନେରଖନ୍ତି, ମୁଁ ବହୁ ଅନୁସନ୍ଧାନ କରି ତା'ର ଗୋଟିଏ ବୈଜ୍ଞାନିକ ତଥ୍ୟ ମଧ୍ୟ ଆବିଷ୍କାର କରିଛି। ଆପଣମାନଙ୍କ ଭିତରେ ଯେଉଁମାନେ ନେତୃପଦ ଆଶାୟୀ ସେମାନଙ୍କର ବିଶେଷ କାର୍ଯ୍ୟରେ ଲାଗିବ।

ଆପଣ ଯାହାକୁ ଦେଖିବେ, ତା' ନାମ ପଚାରି, ତା' ରୂପ ଓ ନାମର ଗୋଟାଏ ସମ୍ପର୍କ ଗଢ଼ିନେବେ। କେଉଁଠି ସାମଞ୍ଜସ୍ୟ, କେଉଁଠି ବା ଅସାମଞ୍ଜସ୍ୟ। ଅଧିକ ସ୍ଥଳରେ ଆପଣ କଣାପୁଅର ନାମ ପଦ୍ମଲୋଚନ ପାଇବେ। ବିଶେଷତଃ ଝିଅମାନଙ୍କ ଭିତରୁ ଆପଣ ଏପରି ଅନେକ ଶ୍ରେଷ୍ଠୀ ପାଇବେ ଯାହାଙ୍କ ନାମ ହୋଇଥିବ ଶ୍ରୀମତୀ।। ସ୍ମୃତିଟା ସବୁବେଳେ କଣ୍ଟା ନା କଣ୍ଟା ସମ୍ପର୍କିତ ସୂତ୍ରରୁ ସ୍ଥାୟୀ ହୁଏ। ତେଣୁ ଆପଣ ନାମ ସହିତ ଗୋଟିଏ ସମ୍ପର୍କ କରିନେବେ। ଧରନ୍ତୁ ମୋ ନାମ 'ରସବାଜ।' ଆପଣ ତା'ର ଅର୍ଥ କରିବେ—ହୁଏତ ଇଏ ରସାବଳି ଆଦି ତିଆରି କରିବାରେ ସିଦ୍ଧହସ୍ତ—ତେଣୁ ଗୁଡ଼ିଆ। ମାତ୍ର ଗୁଡ଼ିଆ ସହିତ ଆପଣଙ୍କର ଗୋଟିଏ ସୁହୃଦ ବା ବିରୋଧ ରହିବା ଉଚିତ। ତେଣୁ ଆପଣ ଯଦି ଗୁଡିଆ ନ ହୋଇଥାନ୍ତି ତେବେ ଆପଣ ଚିନ୍ତା କରିବେ ଇଏ ରସବାଜ —ଏହାଙ୍କ ସହିତ ସମ୍ପର୍କଟା ମିଠା ବା ମଧୁର ହେବା ଦରକାର। ପୁଣି ମିଠାର ରାଜ ବା ଚରମ ସଂପର୍କ ଅର୍ଥାତ୍ ଚରମ ମଧୁର ସମ୍ପର୍କ

ସ୍ଥାପନ କରି ଆପଣ ବଧାଟାଏ ମଧ୍ୟ ମାରିଦେଇ ପାରନ୍ତି । ଦେଖିବେ ନାମଟା ନିଶ୍ଚୟ ମନେ ରହିବ ।

ଆମ ଓଡ଼ିଶାରେ ବି ଅନେକ ନେତା ଗାନ୍ଧିଜୀଙ୍କପରି ନାମ ମନେ ରଖିବାକୁ ଚେଷ୍ଟା କରନ୍ତି । ନାମ ମନେ ନ ରଖିଲେ ଆପଣଙ୍କୁ ଲୋକେ ନିଶ୍ଚୟ କହିବେ—ଏଃ, ଘରି ନେତା ହୋଇଗଲେଣି ଯେ ମଣିଷ ଚିହ୍ନି ପାରୁନାହାନ୍ତି । ତେଣୁ ଆପଣଙ୍କୁ ଯେ କୌଣସିମତେ ନାମ ମନେରଖିବାକୁ ହେବ । ମୁଁ ଜଣେ ଓଡ଼ିଶୀ ନେତାଙ୍କ ଠାରୁ ନାମ ମନେ ରଖିବାର ଗୋଟିଏ ସୁବିଧା ବାଟ ପାଇଛି । ସେଇଟା କଥାରେ କହିଦେଲେ ଆପଣ କାଳେ ବୁଝି ନ ପାରିବେ—ସେଥିପାଇଁ ଅଙ୍ଗେ ନିଭେଇଲା ଘଟଣାଟିଏ କହୁଛି, ଶୁଣନ୍ତୁ ।

ମୁଁ ସେତେବେଳକୁ ନେତାଗିରି ଆରମ୍ଭ କରୁଥାଏଁ, ନେନ୍ତା ନେନ୍ତା ହୋଇକରି ଆମ୍ବପରି ଝୁଲୁଥାଏ—ପାଚି ନ ଥାଏଁ । ନେତା ହେବା ଆଗରୁ ମୁଁ ଜଣେ ଓଡ଼ିଶୀ ନେତାଙ୍କୁ କାକୁତି ମିନତି କରି କହିଲି—ଆଜ୍ଞା, ମୋତେ ଗୋଟିଏ ନେତା କରି ଦିଅନ୍ତୁ ! ସେ ମୋତେ ପଛଆଡ଼ୁ ଠେଲିଠାଲି ଯେତେ ଆଗେଇଲେ ବି ମୁଁ ପୂରା ଆଗେଇ ପାରୁ ନଥାଏଁ । ନାନା ଉପାୟ ମୋତେ ବତଉଥାନ୍ତି । ତା' ଭିତରୁ ଗୋଟିଏ ମୁଁ କହି ସାରିଥାଏଁ । ଆପଣମାନେ ମନେରଖନ୍ତୁ—ନେତା ହେବା ଆରମ୍ଭରୁ ଆପଣଙ୍କ ନାମଟା ଯଦି ଛୋଟ ଥାଏ ତେବେ ତାକୁ ଟିକିଏ ଦୀର୍ଘ କରିଦେବେ । ନେତା ହୋଇଗଲେ ପୁଣି ଲୋକେ ତାକୁ ନିଜେ ନିଜେ ଛୋଟ କରିଦେବେ । ଉଦାହରଣ ସ୍ୱରୂପ—ଗାନ୍ଧୀଜୀଙ୍କ ନାମ ଥିଲା ମୋହନଲାଲ । ସେ ତାକୁ ନେତା ହେବା ବେଳରେ ବଢ଼େଇ ଦେଇଥିବେ—ମୋହନଲାଲ କରମଚାନ୍ଦ ଗାନ୍ଧୀ । ପୁଣି ଲୋକେ ତାକୁ ଯଥା

ସମୟରେ କାଟିକୁଟି କଲେ ଗାନ୍ଧୀଜୀ—ବାପୁଜୀ ଇତ୍ୟାଦି । ସେମିତି ହରି ମହାତାବ—ହରେକୃଷ୍ଣ ମହତାବ—(ଖାଲି) ମହତାବ । ଜହରଲାଲ ନେହେରୁ, ପଣ୍ଡିତ ଜହରଲାଲ ନେହେରୁ—ଖାଲି ନେହେରୁ । ଏଇଭଳି କେତେକ ନାମ ଆପଣଙ୍କ ସୁବିଧା ପାଇଁ ତଳେ ଦେଉଛି—ଯାହାର ଯେତେବେଳେ ଦରକାର ହେବ— କାମରେ ଲଗାଇ ଦେବେ ।

### ନାମ ବୃଦ୍ଧି

| | |
|---|---|
| ଶୈଳେନ୍ଦ୍ର ଭଞ୍ଜଦେଓ | ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ |
| ସତିଆ ମହାନ୍ତି | ସତ୍ୟପ୍ରିୟ ମହାନ୍ତି |
| ଦୀନା ସାହୁ | ଦୀନବନ୍ଧୁ ସାହୁ |
| ପବନ ପ୍ରଧାନ | ପବନମୋହନ ପ୍ରଧାନ |

ଏହିପରି ଭାବରେ, ଲିଙ୍ଗଲାରୁ ଲିଙ୍ଗରାଜ, ଶୁକୁଟାରୁ ଶୁକସେନ, ବୁଦାରୁ ବୁଦ୍ଧଦେବ, କୁନିଆରୁ କୁମୁଦଚନ୍ଦ୍ର, ପଦିଆରୁ ପଦ୍ମଭୂଷଣ, ପଦ୍ମନାଭ, ହଗୁରୁ ହୟଗ୍ରୀବ, ହାଁଡିଆରୁ ହରେକୃଷ୍ଣ, ହରବନ୍ଧୁ, ଇତ୍ୟାଦି ଇତ୍ୟାଦି ।

### ଉପାଧି ବୃଦ୍ଧି

| | |
|---|---|
| ଦେଓ— | ସିଂହଦେଓ, ଭଞ୍ଜଦେଓ |
| ପାଠୀ, ପାଢ଼ୀ— | ତ୍ରିପାଠୀ |
| ପାଣି— | ପାଣିଗ୍ରାହୀ |
| ରାଉତ— | ରାଉତରାୟ |

ଏହିପରି ଭାବରେ, ଦାସରୁ ଦାସ ମହାପାତ୍ର, ରାୟରୁ ଦକ୍ଷିଣରାୟ, ନାୟକରୁ ପଟ୍ଟନାୟକ, ମହାଲାୟକ ଇତ୍ୟାଦି ।

ହଁ, ମୁଁ ଆପଣଙ୍କୁ ଅଙ୍ଗେ ନଭେଇବା କଥାଟିଏ କହୁଚି ପରା ଶୁଣନ୍ତୁ ।

ଆପଣ ନେତା ହେବା ଦିନରୁ ଆରମ୍ଭ କରି ନେତା ହେବାଯାଏ ବହୁତ ଅଲଗା ଲୁଣିଆ ନମସ୍କାର ପାଇବେ । ଆପଣଙ୍କୁ ସେମାନେ ଚିହ୍ନନ୍ତି ମାତ୍ର ଆପଣ ହୁଏତ ଚିହ୍ନନ୍ତ ନାହିଁ । ସେଠି କ'ଣ କରିବେ, ଖାଲି ପ୍ରତିନମସ୍କାରଟିଏ କରିଦେଲେ କ'ଣ କଥା ସରିଗଲା ? ସେ ଲୋକ ଭାବିବ କ'ଣ ? ତା'ର ଉପରେ ଆପଣଙ୍କ ନେତୃତ୍ୱ ଝୁଲୁଛି—ଜାଣିଥିବେ । ତେଣୁ ଆପଣ ନେତା ହେବାକୁ ମନ କଲାକ୍ଷଣି ଆପଣ ଭାବି ନେବେ ଯେ ଆପଣ ସବୁ ଜନତା— ସମସ୍ତଙ୍କୁ ଜାଣନ୍ତି ।

ମୁଁ ଦିନେ ଟ୍ରେନରେ ଆସୁଥାଏଁ । ମୋ ସୁଟକେଶ୍ ଉପରେ ମୋ ନାମ ବସିଛି—ରସରାଜ, ଦେଶ ସେବକ, ମାନେ ଭାବୀ ଏମ. ଏଲ. ଏ—ଏମ୍. ପି., ମିନିଷ୍ଟର—ଦେଶ ସେବକ ଇତ୍ୟାଦି । ଜଣେ ଲୋକ କଟକ ଷ୍ଟେସନରେ ମୋ ଡବାରେ ଉଠିଲା । ମୋତେ ଦେଖି ନମସ୍କାର କଲା ସାଙ୍ଗେ ସାଙ୍ଗେ । ମୁଁ ଓଠର ଗୋଟିଏ ପାଖରେ ଅଳପ ହସ ଖେଳାଇ ନମସ୍କାର କରି ପଚାରିଲି—ଭଲ ଅଛନ୍ତି ?

"ଆଜ୍ଞା ହଁ," ସେ ଉତ୍ତର ଦେଲା—ଆଡ଼ ନିରାଡ଼ମ୍ବର ଭାବରେ ଲୋକଟା ସୁନ୍ଦର—ଯୁବକ—ଜ୍ଞାନବୃଦ୍ଧ ମନେ ହେଉଥିଲା । ପୋଷାକ ପରିଛଦରେ ପରିପାଟୀ ଥିଲା । ନେତା ହେଉ ନ ହେଉ ନେତା ହେବାକୁ ମନେ କଲାଭଳି ବେଶି । ହାତରେ ଖବରକାଗଜ, ରେଲୱେ ବୁକ୍‌ଷ୍ଟଲ କିଣା ବହିଟାଏ । ଆଖିରେ ଚଷମା । ହାତରେ ବ୍ୟାଗ୍ । ସବୁ ମାଲ୍ ମସଲା ଅଛି । ଏଭଳି ଲୋକ ହେଉଛନ୍ତି ପୋଟେନସିଆଲ ନେତା ! ପୁଣି ନେତା ହେବା ଆଗରୁ ଏମାନେ ଅନେକ ନେତା

ସୃଷ୍ଟି କରନ୍ତି । ତେଣୁ ଏତିକି ଆଳାପରେ ମୁଁ ସନ୍ତୁଷ୍ଟ ହୋଇ ପାରିଲି ନାହିଁ । ପଚାରିଲି—ଆପଣଙ୍କ ବାପା ଭଲ ଅଛନ୍ତି ।

"ମୋ ବାପା ?" ଭଦ୍ରଲୋକ ଆଶ୍ଚର୍ଯ୍ୟ ହୋଇ ଉତ୍ତର ଦେଲେ—"ତାଙ୍କୁ ଆପଣ କେବେ ଦେଖିଥିଲେ ? ମୁଁ ଚାରି ବର୍ଷର ହୋଇଥିଲି ସେ ମଲେଣି ।"

ମୁଁ ହଠାତ୍ କହିଦେଲି—"ଆହା ହା—ହେଁ ହେଁ—ମୁଁ ପଚାରୁଛି—ବାପା ବୋଲି ମୁଁ କ'ଣ ଜାଣେ ନାହିଁ—ଆପଣ Self made man—ନିଜ ଗୋଡ଼ରେ ନିଜେ ଠିଆ ହୋଇଛନ୍ତି । ମୁଁ ପଚାରୁଥିଲି—ସେଇ ଯେ ଆପଣଙ୍କ ପଢ଼ାପଢ଼ି କଥା ବୁଝୁଥିଲେ —ଆପଣ ତାଙ୍କୁ କ'ଣ ବୋଲି ଡାକନ୍ତି ?"

"ମୋ ପଢ଼ାପଢ଼ି କଥା ମୋ ମା ଛଡ଼ା ଆଉ କେହି ବୁଝୁ ନ ଥିଲେ ତ—"

"ମଲା, ମୋତେ କ'ଣ ଅଛପା ଅଛି ଆପଣଙ୍କ ମା କେଡ଼େ ଉଷା ବୁଦ୍ଧିମତୀ । ସେ ନ ଥିଲେ ଆପଣମାନେ କ'ଣ ମଣିଷ ହୋଇ ପାରିଥାନ୍ତେ ।"

"ଆଜ୍ଞା ମୁଁ ଗୋଟିଏ ପୁଅ ମୋ ବାପ ମା'ଙ୍କର ।"

"ମୁଁ ସେଇ ଆପଣଙ୍କ କଥା କହୁଛି ।"

ହଠାତ୍ ଭଦ୍ରଲୋକ ବିରକ୍ତ ହୋଇ ଝରକା ସେ ପଟକୁ ଚାହିଁଲେ ମୁଁ ବଡ଼ ଲଜ୍ଜିତ ହୋଇ ଖବରକାଗଜରେ ମନଦେଲି । ଭଦ୍ରଲୋକ ହଠାତ୍ ମୁହଁ ଫେରାଇ ମୋତେ ହସି ହସି କହନ୍ତି—ଆପଣ ମୋତେ ଏତେ ଚଞ୍ଚଳ ଭୁଲିଗଲେ, ଆପଣଙ୍କ ସହିତ ମୋର ବହୁବାର ଦେଖା ସାକ୍ଷାତ୍ ଆଳାପ ହୋଇଛି—ରିଟିପର ବିଆନିଆ ହେଇଛି ଆପଣ ବର୍ତ୍ତମାନ ଜଣେ

ନେତା ହେବାକୁ ଯାଉଛନ୍ତି ବୋଲି ଏ ଗରିବ ବନ୍ଧୁଟିକୁ ଏକାବେଳକେ ଭୁଲିଗଲେ ?

ମୁଁ ଉଦାର ହସ ଫୁଟାଇ କହିଲି—ହେଁ ହେଁ—ତା' କ'ଣ ହୋଇପାରେ । ବନ୍ଧୁ ସେ ସେ ବନ୍ଧୁ—ମୁଁ ଯେତେ ବଡ଼ ଆପଣ ଯେତେ ଶ୍ରେଷ୍ଠ ହେଲେ ବି ଆମେ ବନ୍ଧୁ । ମୁଁ କ'ଣ କେବେ ଆପଣଙ୍କୁ ଭୁଲିପାରେଁ । ଆପଣଙ୍କ ସଦ୍ଗୁଣ ଏକା ତ ଏବେ······

ସେ କଥା ଛଡ଼ାଇ ନେଇ କହିଲେ—"ଭୁବନେଶ୍ୱରରେ ଏସେମ୍ବ୍ଲି କ୍ୟାଣ୍ଟିନ୍‌ରେ ଦେଖା ହୋଇଥିଲା—ଆପଣ ମୋତେ ଗୁଡ଼ ଜଳଖିଆ ଦେଲେ···।

"ଆଜ୍ଞା ହଁ, ମୋର ଠିକ୍ ମନେ ଅଛି । ଆପଣ ପଇସା ଦେଇ ଦେଉଥିଲେ—ମୁଁ କହିଲି ଥାଉ ଥାଉ, ମୁଁ ଦେଇଦେବି । ଦୋକାନୀ କହିଲା—ବାବୁଙ୍କ ଏକାଉଣ୍ଟରେ ପଡ଼ିଗଲାଣି । ନୁହେଁ ?"

"ଆଜ୍ଞା ହଁ । ଆପଣ ପରା ସେଦିନ ନିଜେ ମୋତେ ନାଁ ଧରି ପଛରୁ ଡାକିଲେ ।"

"ହଁ ହଁ, ମୋର ଠିକ୍ ମନେ ଅଛି—ତମ ନାଁ···ଏଇ ଶ୍ରୀ ଶ୍ରୀ···"

"ହଁ ଆଜ୍ଞା ଠିକ୍ ସେଇୟା, ଶ୍ରୀଧର ଆଜ୍ଞା ।"

"ଆଚ୍ଛା ଶ୍ରୀଧର, ତମେ ସେଥର ପରୀକ୍ଷା ଦେଇ···"

"ପାସ୍ କଲି ଆଜ୍ଞା ଏମ୍. ଏ ।"

"ହଁ, ହଁ—ଇଂରେଜୀ—ନା ନା ଇକନମିକ୍‌ସରେ—ଆହା ହା —ଓଡ଼ିଆ ନୁହେଁ ?"

ହଁ ଆଜ୍ଞା, ସେଇୟା ।"

"ତମ ଘର ସେ—ସ···ଅସେ···"

ଠିକ୍ ଆଜ୍ଞା—ଅସୁରେଶ୍ୱର ପାଖରେ ନାଆମୀ ଆଜ୍ଞା ।"

"ଦେଖ ମୁଁ ଆପଣଙ୍କୁ ଭୁଲିଯିବ ! ଯାହାକୁ ଥରେ ଦେଖିଛି ସେ ମୋ ମନରେ ଅଳିଭା ଗାର ହୋଇ ରହିଯାଇଛି । ମୋତେ ପରା ଗାନ୍ଧିଜୀ କହୁଥିଲେ—ରାଜ୍, ତମର ମେମରିଟାର ଓଜନ ହେବା ଉଚିତ । ନେହେରୁ କହନ୍ତି—ମୁଁ ଦେଶରେ ଏମିତି ମେମରୀ ଦେଖିଛି—ଚୌଧୁରୀ କହୁଥିଲେ, ଦୁନିଆଁରେ ସବୁ ଫେଲ ହୋଇଯିବ—ରସିକଙ୍କର ମେମରି ଖଣ୍ଡି ଆଉ କେବେ ଫେଲ ନ ହୁଏ ।"

"ଆଜ୍ଞା ହଁ, ମୁଁ ବି ଠିକ୍ ସେଇଆ ଦେଖୁଛି ।"

"ଆପଣ ଫରେନ୍ ସ୍କଲରସିପ୍ ନା ସରଭିସ୍—"

"ଆଜ୍ଞା ସରଭିସ୍ ଆଜ୍ଞା—"

"ମୋଠୁଁ......

"ହଁ ଆଜ୍ଞା ।"

"ସାର୍ଟିଫିକେଟ ନେଇଥିଲ—ନୁହେଁ ?"

"ହଁ ଆଜ୍ଞା ।"

"ସେ ଚାକିରୀ ତ.........

"ହୋଇଗଲା ଆଜ୍ଞା ।"

"ହେଁ ହେଁ—ନ ହୋଇ ଯିବ କୁଆଡ଼େ—ପି. ଏସ୍.ସି .ର ୨ ଜଣ ମେମ୍ବର ମୋ କଲେଜିଆ—ଜଣେ କ୍ଲାସମେଟ୍—ସେମାନେ ମୋ ସାର୍ଟିଫିକେଟକୁ ଅବହେଳା କରିପାରିବେ ?"

"ଆଜ୍ଞା ହଁ ଆପଣଙ୍କୁ ନ ଜାଣେ କିଏ ? ମୁଁ ଯେଉଁଠି ଶୁଣେ ଆପଣଙ୍କ ନା । ଆପଣ ଶ୍ରମିକ ସଭାରେ ଭଲ ବକ୍ତୃତା ଦିଅନ୍ତି—ସମ୍ପାଦକଙ୍କୁ ପତ୍ର କଲମରେ ବରାବର ଲେଖନ୍ତି ।"

"ଓଃ—ତେବେ ତମେ ମୋତେ ଭଲ ଭାବରେ ଜାଣ

ଦେଖୁଛି—କ'ଣ ବୋଲି ଜାଣ—କ'ଣ ବୋଲି ଜାଣ ?—
ଲୋକେ ମୋତେ କ'ଣ କହନ୍ତି—କ'ଣ କହନ୍ତି ?"

"କ'ଣ ବୋଲି କହନ୍ତି ?" କହି ଭଦ୍ରଲୋକ ସିଧାସଳଖ ମୋ ଆଡ଼କୁ ବୁଲିପଡ଼ି କହିଲି—"ଲୋକେ କହନ୍ତି—ମୁଁ ବି କହୁଛି—ଆପଣ ଜଣେ ନିର୍ଦ୍ଦୋଷ ମିଥ୍ୟାବାଦୀ ।"

ମୁଁ ତ ଭକୁଆ ରହିଗଲି । ଲୋକଟା ଏମିତ ଗର୍ଜନ କରି କହିଲି—ଉଦାଯାଙ୍କ ଲୋକେ ମୋତେ ଅନାଇଁ ରହିଲେ । ମୁଁ ତା'ର ପ୍ରତିବାଦ କରି ପାରିଲି ନାହିଁ ।

ସେ ସେଉଠୁ ଅଳ୍ପ ହସି କହିଲି—ଆପଣ ପ୍ରତିବାଦ କରି-ପାରିବେ ? ପାରିବେ ନାହିଁ, ଆପଣ ଏକା ନୁହଁନ୍ତି—ମୁଁ ଯେତେ ନେତା ଦେଖିଛି—ଏବଂ 'ହ ହ' ନେତା ଦେଖୁଛି ସେମାନଙ୍କ ଭିତରୁ ଅଧିକାଂଶ ଏକାଭଳି ମିଛ କହନ୍ତି । ଆପଣଙ୍କୁ ମୁଁ ଜୀବନରେ ପ୍ରଥମ ଥର ଆଜି ଏଇ ଗାଡ଼ିରେ ଦେଖୁଛି । ଆପଣ ଯେ ଜଣେ ନେତାଭିଳାଷୀ ଆପଣଙ୍କ ଢଙ୍ଗଢାଙ୍ଗରୁ ମୁଁ ବେଶ ବୁଝିପାରି ଆପଣଙ୍କ ସହିତ ଆଳାପ କଲି । ଆପଣ ମୋ ସମ୍ବନ୍ଧରେ ଯାହା ସବୁ କହିଗଲେ, ସବୁ ମିଛ ।"

ଭୁବନେଶ୍ୱର ଷ୍ଟେସନ ହୋଇଗଲା । ମୁଁ ବ୍ୟାଗ ଓ କାଗଜ ଧରି ଗାଡ଼ିରୁ ଓହ୍ଲାଇ ଗଲି ।

ତଥାପି ମୁଁ ମୋର ଯେତେ ଶକ୍ତି ଅଛି, ସେ ସବୁ ସଂଗ୍ରହ କରି ଅତି ଜୋର୍‌ରେ ସହିତ କହିପାରେ—ନେତା ଓ ନାମ ଅଭିନ୍ନ । ନେତା ହେବାକୁ ହେଲେ ନାମକୁ ଜଣାଇବ ଓ ଅନ୍ୟର ନାମକୁ ଜାଣିବାକୁ ହେବ—ଜାଣି ନ ଥିଲେ ଜାଣିଲି ଭଳିଆ ଦେଖାଇବାକୁ ହେବ ।

# ଗୋବର୍ଦ୍ଧନ ଦାସ

ଆପଣ ଗୋବର୍ଦ୍ଧନ ଦାସଙ୍କୁ ଚିହ୍ନିଥିବେ । ହୁଁ ନିଶ୍ଚୟ ଚିହ୍ନିଥିବେ । ସେମିତି ତ କେତେ ଗେବ, ଗୋବ, ଗୋବରା, ଆପଣଙ୍କ ଗାଁ ଗୋହିରୀରେ ଗଡ଼ୁଛନ୍ତି । ମୁଁ ସେ ଗୋବର୍ଦ୍ଧନ କଥା କହୁନାହିଁ । ସେଇ ବିଖ୍ୟାତ ଗୋବର୍ଦ୍ଧନ ଦାସ···

ଅନେକ ଇତିହାସ । କେଉଁଠାରୁ ବା ମୁଁ ଆପଣଙ୍କୁ କହିବି ? ଆପଣ ଗୋବର୍ଦ୍ଧନ ଦାସଙ୍କୁ ଚିହ୍ନି ନାହାନ୍ତି ଓ ଆପଣଙ୍କ ଜୀବନ ଅପୂର୍ଣ୍ଣ । ଆପଣ ଲଣ୍ଡନ, ୱାଶିଂଟନ୍ ନ ଦେଖିଥାଇ ପାରନ୍ତି—ଆପଣ ଚତୁର୍ଧାମ ପଞ୍ଚନାଭି ତୀର୍ଥ ଦର୍ଶନ ନ କରି ମଧ୍ୟ ନିସ୍ତାର ହୋଇ ପାରିବେ ମାତ୍ର ଗୋବର୍ଦ୍ଧନ ଦାସଙ୍କର ଯିଏ ଦର୍ଶନ ନ ପାଇଛନ୍ତି, ତା' ଜୀବନ ଅସାର୍ଥକ । ଗଲା ଦି'ଗଣ୍ଡା ଦି'କଉଡ଼ା । ଇହକାଳ, ପରକାଳ ତାର ସବୁ ମାଟି ।

ହଁ ତାହାଁଙ୍କ ସେକଥା ମୁଁ କହୁଛି । ମାତ୍ର ଯେତେ କହିଲେ ବି କଥାଟା ବାକୀ ରହିଯିବ । ତାଙ୍କୁ ନିଜ ଆଖିରେ ନ ଦେଖିଲେ ସାଙ୍ଗରେ ନ ମିଶିଲେ ସେ ଯେ ଏତେବଡ଼ ବିରାଟ ବସ୍ତୁ ସେ କଥା କେବଳ ବର୍ଣ୍ଣ, ପଦ ବାକ୍ୟରେ ବର୍ଣ୍ଣିଲେ ଅବର୍ଣ୍ଣ, କୁପଦ ଓ କୁବାକ୍ୟ ହେବା ସୁନିଶ୍ଚିତ । କାହାଁକି, ଆପଣ ଏବେ ବି ତାଙ୍କୁ ଦେଖିଆସି ପାରନ୍ତି । ତାଙ୍କ ପାଖକୁ ଦୌଡ଼ି ଦେଇଯିବା ଦରକାର ନାହିଁ । ଯେତେବେଳେ ଯିବେ ସେ ଘରଟି ଭିତରେ ଚୁପ୍‌ଚାପ ବସିଥିବାର ଦେଖିବେ । ବଡ଼ ଶାନ୍ତିପ୍ରିୟ ମାନବ । କାହାର ଭଲ ମନ୍ଦରେ ନଥାନ୍ତି । ଏତେବଡ଼ ବିରାଟ ଲୋକ ସେ ମାତ୍ର ଖୁବ୍ ଅଳ୍ପ ଲୋକ ତାଙ୍କର ସେ ବିରାଟତ୍ୱକୁ ଆବିଷ୍କାର କରିପାରିଥିବେ । ଦେଖିଲେ ବି ବୁଝିପାରିବେନି ଆପଣ ।

ଲୋକଟା ଖୁବ୍ ଡେଙ୍ଗା ନୁହେଁ—ବରଂ ବାଙ୍ଗର । ଗୋରା ଦେହ ହାତଗୋଡ଼ ସରୁ ସରୁ ମାତ୍ର ପେଟଟା ବେଶ୍ ଥନ୍ଥଲ । ମୁହଁଟି ଦେହ ତୁଳନାରେ ଖୁବ୍ ଛୋଟ । କେଉଁ ଯୁଗର ପୁରୁଣା ମରହଟିଆ ଲୋକ । ମୋ ଗୋସେଇଁ ବାପା ବି ଗୋବର୍ଦ୍ଧନ ଦାସ ନାଁ ଧରିବାର ଶୁଣିଛି । ଏ ସେଇ ଗୋବର୍ଦ୍ଧନ ଦାସ ହୁଏତ ହେବେ । ହଁ, ମୁଁ ଭଲକରି ଜାଣେ ଏ ସେହି ।

ଗୋଟିଏ ବି ଦାନ୍ତ ପଡ଼ିନାହିଁ—ଦୁଇ ପାଟିଯାକ ଏବେ ବି ସେମିତି ଗୋଲ୍ଲ ହେଣ୍ଡା ଭଳି ଚକ୍ ଚକ୍ ମାରୁଛି । କହନ୍ତି, ଜୀବନରେ ସେ ଗୋଟିଏ କଥାର ପରଖ କରି ଆସିଛନ୍ତି—ଏ ବତିଶଟି ଦାନ୍ତ ତାଆଁର ଶୁହା । ଯେଉଁଦିନ ଏଥିରୁ ଗୋଟିଏ ଦାନ୍ତ ଖସିବ, ସେହିଦିନ ମୁଁ ଚାଲିଲି—ସେଦିନ ମୁଁ ଜାଣିବି ମୋ ଇଜଣାନ୍ତରେ ନଚେତ୍ ବା ଗୁଞ୍ଜରେ କମିତି କଣ ହୋଇଯାଇଛି । କଳିଯୁଗରେ ଯେତେବେଳେ ଧର୍ମ ଚାରି ପାଦ ଲୁଚିଲା ସତ୍ୟ ହରାଇ

ଆଉ କଣ କରିବ ? ଦଉଡ଼ ପଳାଉ ପଳାଉ ଗୋବର୍ଦ୍ଧନ ଦାସଙ୍କ
ମୁହାଁବାଟେ ପଶିଗଲି । ଗୋବର୍ଦ୍ଧନ ଦାସେ ଦାନ୍ତ କଡ଼ାଟି କରି
ତାଙ୍କୁ ସେଇ ଦିନରୁ ଧରି ବସିଛନ୍ତି ।

ମୋ ଗୋସେଇଁ ବାପା କହୁଥିଲେ ପରା—ଗୋବର୍ଦ୍ଧନ ଦାସ
ବୋଲି ଗାଟିଏ ଲୋକ, ସେ ମହାରାଣୀ ଭିକ୍ଟୋରିଆଙ୍କଠାରୁ
ସୁପାରିଶ୍ ପରୁଆନା ପାଇଛି । ସେ ପରୁଆନା ଖଣ୍ଡିକ ଇମିତି
କାଗଜରେ ଲେଖା ଯେ—ନିଆଁରେ ପୋଡ଼ିଲେ ପୋଡ଼ିବ ନାହିଁ କି
ପାଣିରେ ବୁଡ଼ାଇଲେ ବୁଡ଼ିବ ନାହିଁ । ୧୯୨୧ର ଘରପୋଡ଼ି ଆଉ
୧୯୬୧ର ବଢ଼ିରେ ଏକଥା ପରଖ ହୋଇଯାଇଛି । ଘରପୋଡ଼ିଆ
ମହାପାତ୍ରେ ଆଉ ଛତର ଦିଆ ଦାସେ ତାର ସାକ୍ଷୀ ।
ବାପା କହୁଥିଲେ ଗୋବର୍ଦ୍ଧନ ଦାସେ ସେତେବେଳେ ଦିଲ୍ଲୀରେ ।
ବଡ଼ଲାଟ ଘରେ ଜଣେ ବଡ଼ ଅଫିସର । ଧଳା ଧଳା ପୋଷାକ
ଉପରେ ଜରିମରା ଚୁଡ଼ା । ସେତେବେଳକୁ ତାର ଫଟ ଦେଖି
ଚହଲି ପାରିବ ନାହିଁ, —ଦାସେ ଗୋରା କି କଳା । ପଞ୍ଚମଜର୍ଜ
ଭାରତକୁ ଆସିଥିଲାବେଳେ ନୋଟରେ ଚୁଲି ଲଗା ହୋଇ ଯେଉଁ
ଗୁହା ତିଆରି ହେଲା—ଗୋବର୍ଦ୍ଧନ ଦାସ ନିଜେ ସେ ନୋଟ ବଣ୍ଡା
ସବୁରେ ନିଆଁ ଧରେଇଥିଲେ । ଯେତେ ସବୁ ଗୋରା କଳା ବଡ଼
ଅଫିସର ଥିଲେ—କାହାରି ହାତରୁ ସେ କଣ ଗୁହା ଖାଇଲେ ?
ଯେତେ ଲୋକ ଯେତେ ନୋଟ ଜାଳିଛନ୍ତି—ସବୁ ଅକାରଣ ।
ନୋଟ କାଗଜ ଇମିତି ମାର୍ଗେ ଜଳିବ ଯେ ଗୁହା ପାଣିରେ ଟିକିଏ
ବି ଧୂଆଁ ଗନ୍ଧ ରହିବ ନାହିଁ କି ନିଆଁ ଝାସ ବାଜିବ ନାହିଁ । କାଗଜ
ହୁ ହୁ କି ଜଳିଲେ ଗଲା ଗୁମୁସେଇ ଗୁମୁସେଇ ଜଳିଲେ ତ ସର୍ବନାଶ ।
ଗୋବର୍ଦ୍ଧନ ଦାସେ ଅଫିସର ଲୋକ । ତାଙ୍କୁ ତ କେହି କହୁ
ନାହାନ୍ତି କିଛି । ସେ ବଡ଼ଲାଟଙ୍କ ବଡ଼ିଗାର୍ଡ଼ । ଗୋବର୍ଦ୍ଧନ ଦାସେ

କହନ୍ତି—ବଡ଼ ମାନେ ଦେହ । ଦେହକୁ ରକ୍ଷା କରନାବାଲା—ପୁଣି ବଡ଼ଲାଟ ଯେ ମହାରାଣୀଙ୍କର ନିଜେ ପ୍ରତିମା—ତାଙ୍କର ଯେ ଶ୍ରୀଅଙ୍ଗ ତାକୁ ଜଗିବା ସହଜ କାମ ନୁହେଁ । ତାଙ୍କ ଶ୍ରୀଅଙ୍ଗର ପ୍ରତି ଅଙ୍ଗ ପାଇ ଜଣେ ଜଣେ ଗାର୍ଡ଼ ଦରକାର । ହାତ ଗାର୍ଡ଼, ଗୋଡ଼ ଗାର୍ଡ଼ ମୁଣ୍ଡ ଗାର୍ଡ଼ ଇତ୍ୟାଦି । ଗୋବର୍ଦ୍ଧନ ଦାସେ ସବୁଠାରୁ ବଡ଼ ବିଶ୍ୱାସୀ । ସେଥିପାଇଁ ଅତି ଗୁହ୍ୟ ଅଙ୍ଗ ପାଇଁ ତାଙ୍କୁ ଗାର୍ଡ଼ ନିଯୁକ୍ତ କରାଯାଇ ଥିଲା । ବଡ଼ଲାଟଙ୍କର ସେ ଅଙ୍ଗ କେତେଥର କେତେ ମାତ୍ରାରେ କି କି ବସ୍ତୁ ନିଷ୍କାସନ କରେ ତାହାର ତନଖି ଦାସଙ୍କ ଉପରେ । ଦାସେ ସେଥିରେ କୌଣସି ବୈଷମ୍ୟ ଦେଖିଲେ ଡାକ୍ତରଙ୍କୁ ଖବର ଦିଅନ୍ତି । ଦାସେ ଯେତେବେଳେ ଯାଏ ସୁପାରିଶ୍ କରି ନଥିବେ, ସେତେବେଳ ଯାଏ ବଡ଼ଲାଟ ମୁଣ୍ଡ ବାଡ଼େଇ ହେଲେ ବି ଡାକ୍ତର ନ ଆସେ । ବଡ଼ଲାଟ ଯେତେ ଭଲ ଅଛନ୍ତି କହିଲେ ବି ଗୋବର୍ଦ୍ଧନ ଦାସ ଯଦି କହନ୍ତି ଯେ ଆଜି ଏତେ ଆଉନ୍ସ ବେଶୀ ହୋଇଛି—ବା କମ୍ ହୋଇଛି—ଡାକ୍ତର ତୁରନ୍ତ ଆସି ହାଜର । ତେଣେ ଲାଟ ଘରରେ କାନ୍ଦୁଛନ୍ତି କି ପେଟ ବଥାଇବାରୁ ଯନ୍ତ୍ରଣାରେ ଏ ପାଖ ସେ ପାଖ ହେଉଛନ୍ତି—କିନ୍ତୁ ଦାସେ ଯଦି କହିଦେଲେ ସବ୍ ଠିକ୍ ହୈ—ତେବେ ଡାକ୍ତର ଭୁଲ ଭାଟକାରେ ଆସୁଥିଲେ ବି ଫେରିଯିବେ ଅଧବାଟରୁ ।

ଏଭଳି ଯେ କ୍ଷମତାପନ୍ନ ବ୍ୟକ୍ତି ତାଙ୍କୁ ଗୁ ତିଆରି କରିବା ପାଇଁ କିଏ କହିବ ? ସମସ୍ତେ ତାଙ୍କୁ ଦେଖିଲେ ଡରେ ଥରହର । ଦୂରକୁ ହଟିଯାଆନ୍ତି । ସେଦିନ ସମସ୍ତେ ଫେଲ ମାରିବାରୁ ନିଜେ ସମ୍ରାଟ ପଞ୍ଚମ ଜର୍ଜଙ୍କ ଆଖି ନାକରୁ ପାଣି ବହି ପଡ଼ିଲା । ନେଷ୍ଟି କଣ୍ଟିଆକୁ ଆଉ ଆସିବେ ନାହିଁ ବୋଲି ପଣ କରିଥିଲେ । ମାତ୍ର ଦାସେ ଥିଲେ ବୋଲି ସେ ତାଙ୍କ ପଣକୁ ୱାପସ କରି ନେଲେ ।

ଦାସେ ସେତେବେଳେ ଯାଇ ଆଗରେ ଠିଆହୋଇ ଗଲେ । ପଞ୍ଚମଜର୍ଜ ତାଙ୍କୁ ଦେଖିଲ ମାତ୍ରେ କହିଲେ—ଆପ ବଡ଼େ ନେକ ଆଡ଼ମି—You very good boy—ତୁମ ବନାଓ—You tea make. ସାଥେ ସାଥେ ପକେଟରୁ ନୋଟ କାଢ଼ି ବନେଇ ଦେଲେ—ତାଙ୍କ ସାମନାରେ । ଜର୍ଜ ପଚ୍ଛରିଲେ ତୁମ ଇତନା ନୋଟ୍ କାହାଁସେ ପାୟା—To much note where got, ଦାସେ କହିଲେ—ସବ୍ବକସିସ୍—ଜିନ୍ଦଗୀଭର ବକ୍‌ସିସ୍ ଜମାକର ରଖା । Whol life Boxsis store ପଞ୍ଚମଜର୍ଜ ତାର ପାଞ୍ଚଗୁଣ ନୋଟ ବକ୍‌ସିସ୍ ଦେଲେ । ତାପରେ ସେ ଗୃ ଖାଇସାରି ଏମିତ ମଜଗୁଲ୍ ହୋଇ ଗଲେ ଯେ ତାଙ୍କୁ ରୁବାୟତ୍ ଓମର ଖାମ ପଢ଼ି ଶୁଣାଇବା ପାଇଁ ଦାସଙ୍କୁ ହୁକୁମ ଦେଲେ । ଦାସେ ସେତେବେଳକୁ ୪ଗୃର ପାଠ ହାସଲ କରି ସାରିଲେଣି—ଆରବୀ, ଫାର୍ସୀ, ଇଂଲିଶ୍ ଓ ଫରାସୀ । ଓମରଖାମ୍ ଶୁଣି ପଞ୍ଚମଜର୍ଜ ଯାବତ୍ ଚନ୍ଦ୍ରାର୍କେ ଦାସେଙ୍କୁ ପେନ୍‌ସନ୍ କରିଦେଲେ ଓ ବଡ଼ ଖେତାବଟାଏ ଦେଲେ । ସେ ପେନ୍‌ସନ୍ ଗୋବର୍ଧନ ଦାସର ପୁଅ, ନାତି, ପଣନାତି ଏମିତ ବଂଶ ପରମ୍ପରା ପାଇବା କଥା । ମାତ୍ର ଦାସେ ୧୯୬୦ରେ କାଳିଆନାଓ୍ୱାଲା ବାଗ୍ ଅତ୍ୟାଗୃର୍ ଦିନ ସେ ଖେତାବ୍ ଫେରାଇ ଦେଲେ, ଆଉ ପେନ୍‌ସନ୍ ନେବେ ନାହିଁ ବୋଲି ଇନ୍‌କାର କରି ଦେଲେ । ଦାସଙ୍କୁ ସେତେବେଳେ ବମ୍ବେର ଲଟ କରି ଦେବା ପାଇଁ ବ୍ରିଟିଶ୍ ସରକାର ଜୁଲ୍ ପାତିଲେ । ଦାସେ ନେହି କେୟା କରି ଦାଲ୍ଲୀ ଗୁଡ଼ ଓଡ଼ିଶାରେ ହାଜର । ଏବେ ବି ଦାସଙ୍କ ପାଖରେ ଫଟୋ ବାହାରିବ ପଞ୍ଚମଜର୍ଜ କିମିତି ତାଙ୍କୁ ଖିତାବ୍ ଦେଉଛନ୍ତି । ଦାସଙ୍କର ସେତେବେଳେ କି ଚେହେରା ଆଜିକାଲିର ଦାସେ ଆଉ ସେତେବେଳକାର ଦାସେ—ଆକାଶ ପାତାଳ ତଫାତ୍ । ତହେଲେ

ନ ଦେଲେ କେହି ଚଳି ପାରିବ ନାହିଁ । ସେତେବେଳେ ସ୍ୱରାଜ୍ୟର ଖାଇ ନାଗଡ଼ା ବଜାଥିଲେ । ଏବେ ଦେଶପାଇଁ ଶତ୍ରୁକର ଫେଟରେ କଲାକ୍ ଧରିଲାଣି । ସେ ଦାସେ ଏ ଦାସେ ଏକା ହେବେ କେଉଁଠୁ ? ସେତେବେଳେ ସେ ଟୋକା ଥିଲେ । ଏବେ ବୁଢ଼ା ହେବା ହୋଇ ଗଲେଣି । ତାଙ୍କ ଚେହେରାକୁ ଦେଖି ଜଣେ ଇଂରାଜ ଝିଅ ତାଙ୍କୁ ବାହା ହେବାକୁ ମନା କଲା ।

ଦାସେ ବଡ଼ ଧର୍ମାତ୍ମା । ଆପଣା ଜାତି ଧର୍ମ ସେ ନ ଛାଡ଼ନ୍ତି । ଲାଟର ଝିଅ କହିଲା—ବାହା ନ ହେଲେ ବାପକୁ କହି ଚାକିରିରୁ ତଡ଼ିଦେବ । ଏ ତ ଭାରି ଚାଲାକ ଟୋକା । ବଡ଼ଲାଟଙ୍କ ବଡ଼ ଗାଡ଼ି ଥିଲାବେଳେ ବଡ଼ଲାଟଙ୍କ ମେମ୍‌କୁ ଖୁବ୍ ତୋଷାମଦ କରି ରଖିଥାଆନ୍ତି । ସବୁ ଗୁପ୍ତ ଚିଠିପତ୍ର ଯାଉଛି ମାରଫତ୍ । ଦାସେ ଦିନେ ବଡ଼ଲାଟିଆଣୀ ଯାଉଥିବା ବାଟରେ ଠିଆହୋଇ ରୁମାଲରେ ମୁହଁ ପୋଛି କାନ୍ଦିଲେ । ଲାଟ୍ ପତ୍ନୀ ପଚାରିଲେ—କ୍ୟାଁ ରୋତା ? Why crying ?···ଏ ସବୁ ଠିକ୍ ଦାସଙ୍କ ଭାଷାରେ କହୁଛି ବୋଲି ବାପା କହନ୍ତି ।

ଦାସେ କହିଲେ—Head keep ହୋ I pray—ଶିର ରଖି ହୋ ପେଶ୍ କରୁଗାଁ ।

ଲାଟ ପତ୍ନୀ ଅଭୟ ଦେଲେ । ଦାସେ କହିଲେ—Your Majesty Lady Governer General and Vice Roy Commander in Chief's daughter me loving marriging saying—ହଜୁର ଜଙ୍ଗିଲାଟ ଲେଡ଼କୀ ହମେ ପ୍ୟାର କରତା ହେ—କହତା ହେ—ସାଦି କରୁଙ୍ଗୀ, ସାଦି କରୁଙ୍ଗୀ—what doing—କ୍ୟା କରୁଁ ?

ଲିଟ ପତ୍ନୀ ଘର ଖୁସି ହୋଇଗଲେ । ହସି ହସି ପିଠିରେ ହାତ ମାରି କହିଲେ—କରି ଲେ ନା ସାଦୀ - Marry, Marry Why not marry କ୍ୟା ନହି କରେଙ୍ଗା ।

ଦାସେ କହିଲେ—Marry ତୋ marry, if marry, how most faithful be ? ସାଦି କରେଙ୍ଗା ତୋ କରେଙ୍ଗା ଲେକିନ୍ ଉସକା ମୋଷ୍ଟ ଫେଇଥ୍ଫୁଲ ହୋଙ୍ଗା—Then how your most faithful be ? ଫିର ଆପ୍‌କା ଫେଥ୍‌ଫୁଲ କୈସା ହୋଗା । Faithful one-faithful two how. ଏକ୍‌କା ଫେଥ୍‌ଫୁଲ୍ ହୋ ସକ୍‌ତା—ଦୋ କା କୈସେ ?

ଏ କଥା ଯେମିତି କହୁଛନ୍ତି ଦାସେ, ଲିଟପତ୍ନୀ ତ ଦାସଙ୍କୁ କୁଣ୍ଢାଇ ପକାଇ ଗାଲରେ କିସ୍ ଦେଇଦେଲେ । ତାପରେ ଇମିତି ପେଞ୍ଚ କଲା ଯେ ଇଙ୍ଗୀଲିଟ ବଦଳି ଗଲା । ଗଲାବେଳକୁ ତା ଝିଅ ଅନେକ ଜିନିଷ ପ୍ରେଜେଣ୍ଟ ଦେଇ ଯାଇଛି । ତା ଫଟ ତଳେ ସହି କରିଦେଇ ଯାଇଛି । ଯିଏ ଯିବ ଗୋବର୍ଦ୍ଧନ ଦାସ ତାଙ୍କ ଯୁବା କାଳ କଥା ମନେ ପକାଇ ତାଙ୍କ ସବୁ ପ୍ରେମିକାଙ୍କ ଭିତରେ ଏଇ ଇଙ୍ଗୀଲିଟ କନ୍ୟାକୁ ଶ୍ରେଷ୍ଠ ସ୍ଥାନ ଦେଇଥାନ୍ତି । ସେ ଫଟଟା କାନ୍ଥରେ ଟଙ୍ଗା ହୋଇଥାଏ ତାଙ୍କ ଘର ପଶ୍ଚିମ ପଟରେ । ପଶ୍ଚିମ ଦେଶକୁ ଗ୍ଲେଇଗଲା ଓ ତା ପ୍ରୀତି ଚନ୍ଦ୍ରମା ପଶ୍ଚିମ ଦେଶରେ ବୁଡ଼ିଗଲା ବୋଲି ପଶ୍ଚିମ ପଟରେ ତାକୁ ଟଙ୍ଗାଇ ଦେଇଛି । ସେ ତାର ପାଇଁ ଜୀବନରେ ବାହାହେଲେ ନାହିଁ ବୋଲି କହନ୍ତି । ଶତ ଶତ ଗୋବର୍ଦ୍ଧନ ଦାସେ ଦାରଶୂନ୍ୟ । ମୃତ ଦାର କିମ୍ବା ଅବିବାହିତ ସେ କଥା କହିବା ଭଳି ଲୋକ ଏବେ ଆଉ କେହି ଜୀବଦଶାରେ ନାହାନ୍ତି ।

କିନ୍ତୁ ତାଙ୍କର ପୁଅ ଅନେକ । କିଏ କେଉଁଠି ଜିଲ୍ଲା ମାଜିଷ୍ଟ୍ରେଟ ଓ କିଏ କେଉଁଠି ସେକ୍ରେଟେରୀ । କିଏ କେଉଁଠି ଉପମନ୍ତ୍ରୀ ଓ କିଏ କେଉଁଠି ଲାଟ କିର୍ଜ । ତାର କାରଣ ସ୍ୱରୂପ ସେ କହନ୍ତି – ଜୀବନରେ ଯେତେ ଅର୍ଜନ କରିଛନ୍ତି ସବୁ ସେ ଏଇ ପର ପୁଅମାନଙ୍କୁ ଆପଣାର କରି ବିଦ୍ୟା ଦାନ ଦେଇ ମଣିଷ କରିଛନ୍ତି । ମାତ୍ର ଏହି ଯେଉଁ ଉପଯୁକ୍ତ ପୁତ୍ରମାନେ ତାଙ୍କୁ ପଚାରନ୍ତି ନାହିଁ । ବୋଲି ଦୁଃଖ । କିନ୍ତୁ ସେମାନେ ଯେତେବେଳେ ବଞ୍ଚିଛନ୍ତି ସେମାନେ ଏବେ ବି ବୁଢ଼ାକୁ ଭୁଲି ନାହାନ୍ତି । ସମସ୍ତେ ବୁଢ଼ା ପାଖକୁ କାଳୀଙ୍କ ଭୋଗନାଗ ସନ୍ଦେଶ ପଠାନ୍ତି ବା ଦିଲ୍ଲୀରୁ ସୋନ ହାଲୁଆ ଭେଜନ୍ତି ।

ତାଙ୍କ ମତରେ ପୁଅ ଯେ ପୁଅ; ତୋର ମୋର କହିବା ଠିକ୍ ନୁହେଁ—ତୋମାର ଛେଲେ—ଆମାର ଛେଲେ; ଆମାର ଛେଲେ—ତୋମାର ଛେଲେ; ତୋମାର ସ୍ତ୍ରୀ—ଆମାର ସ୍ତ୍ରୀ, ଆର ଆମାର ସ୍ତ୍ରୀ ଥାକଲେ ତୋମାର ସ୍ତ୍ରୀ ହତେ ଆପତ୍ତି କି ? ବୈଧ ଅବୈଧ ସନ୍ତାନ ବୋଲି ଶାସ୍ତ୍ରରେ କିଛି ନାହିଁ । ଯିଏ ଜନ୍ମହେଲା ସେ ଜାତକ—ମନୁଷ୍ୟ । ସେ କାହାଠାରୁ ହେଲା—କିପରି ହେଲା; ଯାଏଆସେ ନାହିଁ । End justifies if means ଲକ୍ଷ୍ୟ ସାଧିତ ହେଲେ ଯଥେଷ୍ଟ । ତେଣୁ ସେ କାହାର ବାପା ନହୋଇ ମଧ୍ୟ ଅନେକଙ୍କର ଯେପରି ବାପା, ହୁଏତ କେତେକଙ୍କର ବାପା ହୋଇ ମଧ୍ୟ ସେ କାହାର ନୁହନ୍ତି ।

ବଞ୍ଚିଥିବା ଯାଏ ସ୍ତ୍ରୀ ସହିତ କଥା ହେଲା ହିନ୍ଦୁ ବିବାହ ଥରେ ସେ ମୋତେ ବୁଝାଇ କହୁଥିଲେ । ଖ୍ରୀଷ୍ଟାନ୍ ମୁସଲମାନଙ୍କର ବଞ୍ଚିଥିବାଯାଏ ଚୁକ୍ତି ରଖିବାର ବାଧ ବାଧକତା ନାହିଁ । ସେମିତ

ଚୁକ୍ତି ସମସ୍ତଙ୍କୁ ମାସେ, ପକ୍ଷେ, ଘଣ୍ଟାଏ, ପାଞ୍ଚମିନିଟ୍ ପାଏ ବି ଅଣାଯାଇପାରେ । ସେଇଟା ଅବୈଧ ହେବ କାହିଁକି ?

ଧର୍ମ ସମ୍ବନ୍ଧରେ ସେ ଧର୍ମ 'ସମନ୍ୱୟ'ରେ ବିଶ୍ୱାସ କରନ୍ତି । ସେ କହନ୍ତି—ଧର୍ମର ଅର୍ଥ ଉପଯୋଗିତା । ଦରକାରବେଳେ ଯେ କୌଣସି ଧର୍ମାବଲମ୍ବୀ ଲୋକ ରୂପେ ପରିଚିତ ହୋଇଯାଇପାରେ । ବଡ଼ଲାଟ ଘରେ ଥିବାବେଳେ ସେ ଥିଲେ କିରସ୍ତାନ । ଜାତୀୟ ଆନ୍ଦୋଳନବେଳେ ସେ ସହଜରେ ନେତା ହେବାପାଇଁ ହେଲେ ଗୋଲବ୍ ଖାଁ । ହିନ୍ଦୁ-ମୁସଲମାନ ଦଙ୍ଗାବେଳେ ସେ ପୂର୍ବ ପଞ୍ଜାବରେ ବନିଗଲେ ଶିଖ୍ । ସ୍ୱାଧୀନ ଭାରତରେ ସେ ପୁଣି ହିନ୍ଦୁ, ମାନେ ଦଳିତ ଜାତି ଅନ୍ତର୍ଗତ । ସେ କହନ୍ତି ତାଙ୍କ ପୂର୍ବ-ପୁରୁଷ ଅସ୍ପୃଶ୍ୟ ଥିଲେ । ବଡ଼ଲାଟଙ୍କ ଘରେ ରହି କିରସ୍ତାନ ହେବା ପରେ ସେ ସ୍ପୃଶ୍ୟ ହେଲେ । ତା'ପରେ ମୁସଲମାନ । ତା'ପରେ ଆର୍ଯ୍ୟ ସମାଜ । ତା'ପରେ ଆମ୍ବେଦକାର ପନ୍ଥୀ ହୋଇ ବୌଦ୍ଧ ହିନ୍ଦୁରେ ଗଣ୍ୟ । ତେଣୁ ଦଳିତ ଜାତି ଅନ୍ତର୍ଭୁକ୍ତ । ଏବଂ ସେହି ଦାବୀରେ ସେ ସରକାରଙ୍କଠାରୁ ବହୁତ କିଛି ଆଶା କରନ୍ତି ।

ମୋର ଦୁଇ ଥର ଜୀବନରେ ଗୋବର୍ଦ୍ଧନଦାସଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲବ୍ଧ ହୋଇଛି । ଥରେ ମୁଁ ଗାନ୍ଧୀ ଟୋପି ପିନ୍ଧି ଯାଇଥିଲି, ଖଦଡ଼ ଭୂଷଣରେ ଭୂଷିତ ହୋଇ । ମୋତେ ଦେଖିବା ମାତ୍ରେ ଗୋବର୍ଦ୍ଧନଦାସ ଜୟ ହିନ୍ଦ କହି ମିଲିଟାରୀ କାଇଦାରେ ସଲାମ ବଜାଇଲେ । ବାପା କହୁଥିଲେ ସେ ପ୍ରାୟ ଏହି ମିଲିଟାରୀ କାଇଦାରେ ସମସ୍ତଙ୍କୁ ପ୍ରଣାମ କରନ୍ତି । କହନ୍ତି—ଜାଣି କରିବ ଅଭ୍ୟାସ ଯାଉନାହିଁ । ଲାଟ ଭବନରେ ଥିବାବେଳେ ପରେଡ୍ କରିବାକୁ ପଡ଼ୁଥିଲା ସବୁଦିନ । ବିଶେଷତଃ ତ ପରେଡ୍ ଦେଖି କମାଣ୍ଡର ଚିଫ୍ ତାଙ୍କୁ କପ୍ତାନ ପଦ ଦେଇଛନ୍ତି । କପ୍ତାନ

ପୋଷାକରେ ତା'ର ଫଟୋଟାଏ ବି ଅଛି । ସେ ଅନେକଙ୍କୁ ଦେଖେଇଛନ୍ତି, ସେ ଛବି । ସେ ଚେହେରା ବି ବର୍ତ୍ତମାନ ଚେହେରା ସଙ୍ଗେ ମିଳୁନାହିଁ । ପୋଷାକ ପିନ୍ଧାର ଇମିତ କାଇଦା ଅଛି । ତା ନହେଲେ ପୋଷାକ ପିନ୍ଧିବା କାହିଁକି ? ଲଜ୍ଜା ନିବାରଣ କରି, ସାନ୍ତାଲ ବି କରୁଛନ୍ତି । ପୋଷାକ ପିନ୍ଧି ଯେତେ ଲୋକ ତୁମକୁ ଚହ୍ନି ପାରିଲେ, ତେବେ ସେ ପୋଷାକକୁ କି କହୁଁ । ଯାତ୍ରାରେ ବେଶ ହେଉଛନ୍ତି—କଣ ସହଜରେ ଚିହ୍ନି ପାରିବ ମଣିଷ କିଏ କଣ ? ଚହ୍ନି ହେଲତ, ସେ ଯାତ୍ରା କ'ଣ ଯାତ୍ରାରେ ଲେଖା । ଫଟ ଯଦି କଥା କହୁଥାନ୍ତା ତେବେ ଅଲବତ୍ ବୁଝାଯାନ୍ତା ଯେ ଏ ଗୋବର୍ଦ୍ଧନ ଦାସ ବନ୍ଦା ।

ମୁଁ ଗୋବର୍ଧନ ଦାସଙ୍କୁ ପଚାରିଲି—ଜୟହିନ୍ଦ୍ କହିବାର ତାତ୍ପର୍ଯ୍ୟ । ସେ ହସିଲେ । କହିଲେ ଜୟହିନ୍ଦ୍‌ର ଆବିଷ୍କାରକୁ ଆଜି ପୃଥିବୀରେ କେହି ଚିହ୍ନିଲେ ନାହିଁ । ନ ଚିହ୍ନନ୍ତୁ କେହି । ନେତାଜୀ ଆଜି ଭାରତର କେହି ନୁହେଁ, ନେହେରୁ ପଟେଲ ସବୁ । କିନ୍ତୁ ନେତାଜୀର ଆଜାଦ୍ ହିନ୍ଦ୍ ଫୌଜ ଲାଗି ଆଜି ଭାରତ ସ୍ୱାଧୀନ । ଏ କଥା କେହି ଅସ୍ୱୀକାର କରିବ ? ଆଉ ଏଇ ଆଜାଦ୍ ହିନ୍ଦ୍ ଫୌଜ କା'ର ମଗଜରୁ ବାହାରିଛି ଜାଣ ? ଏହି ବନ୍ଦା ଗୌବର୍ଧନ ଦାସ । ନେତାଜୀ ଯେତେବେଳେ ଦାଢ଼ି ଗୁଡ଼ି ଘର ଭିତରୁ ଖସି ପଳାଇଲେ—ସେଇଟା କାର ପ୍ଲାନ୍ ? ଏହି ବନ୍ଦା ଗୋବର୍ଧନ ଦାସର । ବଡ଼ଲାଟ ଭବନରେ ଥିବାବେଳେ ମୋର ଜଣେ ଆଫଗାନ ଖାନ୍ ସାମା ସଙ୍ଗରେ ଭାରି ଭାବ ଥିଲା । ତାରି ଜ୍ୱାଇଁ ବୋଲି କହି ସୁଭାଷକୁ ଆଫଗାନ୍ ପଠାଇଦେଲି । ମୁଁ ଦହଲ୍‌ଯାଏ ଗଲି । ସେଠୁ ବୁଢ଼ାର ପୁଅ ସାଙ୍ଗରେ ଡ୍ରଣ୍ଟିଅର୍ । ତାପରେ ପାର । ଗଲାବେଳାକୁ ନେତାଜୀ ଯେତେବେଳେ କହିଲେ—ଦାସେ—ଓଡ଼ିଶାରେ ମୁ

ଜନ୍ମ ନେଇଥିଲି—ଆଜି ଓଡ଼ିଆ ଜଣେ ମୋତେ କର୍ମ ଦେଉଛି । ସେ କର୍ମର ଇସବ ଦିଅ । ମୁଁ କହିଦେଲି—“ଆଜାଦ୍ ଫୌଜ ବନାଓ—ହିନ୍ଦୁସ୍ଥାନକା ଉପର ହମଲା କରେ—ଜୟ ହିନ୍ଦ୍” ସେଇ କଥାକୁ ବେଣ୍ଟା ସୁଭାଷ ମନେ ରଖିଥିଲା ।

ମୁଁ କହିଲି—ଆପଣ ଯାହା କହନ୍ତୁ—୧୯୪୨ ଆନ୍ଦୋଳନ ନ ହୋଇଥିଲେ ସ୍ୱାଧୀନତା ଆସିନଥାନ୍ତା ।

ମୋତେ କୁହାଇ ନଦେଇ ବୁଢ଼ା ଚଢ଼ି ବସି କହିଲା— ଆଃ ମୁଁ କଣ ମନାକରୁଛି । ଓଡ଼ିଶାରେ ୪୨ ଆନ୍ଦୋଳନ କଲା କିଏ ? ନାମ ହେଲା କାର ? ମାର ସିପାହି—ନାମ ସରଦାରକା । ଜାଣ ମୋର ଏକ ପୁଅର ମାମୁଁ ଉଡ଼ାଜାହାଜ ଉଡ଼ିନେବାଲା । ତାକୁ କହି ଅରୁଣା ଆସଫଲାଙ୍କ ହାତରେ ମୁଁ ଏଇଠି ବସି ହୋଲ ଇଣ୍ଡିଆର ରଭିଲ୍ୟୁସନ୍ ପ୍ଲାନ କରି ପଠାଇଲି । ଠିକ୍‌ଏ ତେଜରହୋଇ ଗଲା । ନ ହେଲେ ୯ ଅଗଷ୍ଟ ଦିନ ବ୍ରିଟିଶ ଶାସନ ଶେଷ ହୋଇ-ଯାଇଥାନ୍ତା । ପରୁଚବ ତୁମ କଂଗ୍ରେସ ମନ୍ତ୍ରୀ ଆଉ ତାଙ୍କ ନେତାଙ୍କୁ ତାଙ୍କୁ ମଣିଷ କରିଛି କିଏ ? ହେଇଟି ଦେଖ ପ୍ରଥମ ସ୍ୱାଧୀନତା ଦିବସରେ ତମ ରାଜ୍ୟପାଳ ମୋତେ ଡାକି ସେକ୍‌ହାଣ୍ଡ କରୁଛନ୍ତି । ଫଟୋ ଦେଖ । ଚିହ୍ନି ପାରୁ ନାହଁ । ଦାଢ଼ୀ ଅଛି ରାଜ୍ୟପାଳଙ୍କର । ତାଙ୍କ ମା' ଫର୍ ସେତେବେଳେ ମରି ଯାଇଥିଲା । ସେ ଦାଢ଼ି ଛାଡ଼ିଦେଇଥିଲେ । ପଞ୍ଚମଜର୍ଜଙ୍କ ଦାଢ଼ିଭଳି ଦିଶୁଛି ଠିକ୍ ନୁହେଁ । ଅସୁନ୍ଦର ଦିଶିବ ବୋଲି କଇଞ୍ଚି ଲଗେଇ ଦେଇ ଅଛନ୍ତି । ନ୍ଦୂର ସିନା ଲଗିବ ନାହିଁ ଗାଲରେ କଇଞ୍ଚିରେ କାଟିବା ଦୋଷ ନାହିଁ । ଓ ଏତେ ବଡ଼ ଦାଢ଼ି କଥା ସନ୍ଦେହ ହେଉଛି ନା ? ହେଁ ହେଁ— ତାଙ୍କର ପର ବଙ୍ଗାଳୀ କାୟସ୍ଥଙ୍କ ଘର ମାସେ କାଳ ପାଳନ୍ତି ।

"ମୋତେ ତୁମ ମନ୍ତ୍ରିମାନେ ପେନ୍‌ସନ ଦେବାକୁ କହିଲେ। ମୁଁ ମନାକଲି ଦେଶପାଇଁ ଯେ ଦାନ ଦେଇଛି, ସେ ତାକୁ ପୁଣି ଗ୍ରହଣ କରି ନପାରେ। ପୁଣ୍ୟର ହାଣ୍ଡିକୁ ଭଙ୍ଗେଇ ଖାଇବାର ଦୁର୍ବୁଦ୍ଧି ମୋର ନାହିଁ।"

ଠିକ୍‌ଏ ରହିଯାଇ ମୋତେ କହିଲେ—ଫୁସ୍, ଫୁସ୍‌କା ଜାଣିଛ। ଏ କଥା କହିବ ନାହିଁ କେଉଁଠି। କହିଲେ କେହି ବିଶ୍ୱାସ ଯିବେ ନାହିଁ। ତମ ମୁଖ୍ୟମନ୍ତ୍ରୀଙ୍କୁ ପଚ୍ଚରିବ ସେ କହିବେ। କାହାରି ଆଗେ ଏ କଥା ପ୍ରକାଶ ନ କରିବାକୁ ଆମେ ନିୟମ କରିଛୁ—Very very hiding where publish not. I next home minister meaning polish polish depart.

ବୁଢ଼ା ସିଧା ହୋଇ ବସିପଡ଼ିଲା। ତାପରେ ସାଇଡ଼୍‌ସ୍ କରି କହିଲା-ସେଠି କଣ ଦେଖୁଛ ? ସେଠା ମେସେ ପଠାମିଆର ମେଣ୍ଢା ଚମଡ଼ା। ଗଲାଯୁଦ୍ଧରେ ମୁଁ ମେସାପଠାମିଆକୁ infanty ଭିତରେ ପଶି ଗୁଳିଗଲି। ପୁଣି ଏବାଉଟ୍‌ଟର୍ଣ୍ଣ କରି କହିଲା, ସେଠି କଣ ଦେଖୁଛ ? This Gurilla tenth ବୁଅର war ବୁଅର ଓଆର—ଆପି କା know ? not know ! Here Here Hypopatarues tooth where from know know ? Africa from. ହଠାତ୍ ବୁଢ଼ା ଦୌଡ଼ିଯାଇ ଭିତରୁ ଫିଟାଇ ଆଣିଲା ଗୋଟାଇ ପଦକ this this see you medal medal —ପଞ୍ଚମ ଜର୍ଜ ମୋତେ-Under stand ? No other body got only I.

ମୁଁ କହିଲି ପଞ୍ଚମ ଜର୍ଜ ରାଜା ହେଲାବେଳେ ପିଲାଙ୍କୁ ଏମିତି ଦିଆ ଯାଇଥିଲା । ମୋ ବାପା ବି ଗୋଟା ପାଇ ଥିଲେ । ସେଇଟା ଆମ ଘରେ ଅଛି ।

ହଠାତ୍ ବୁଢ଼ା ଗୋବର୍ଦ୍ଧନ ଦାସ ରାଗିଯାଇ କହିଲେ this ଆଉ that ? ମୋର ଆଖି ନାହିଁ—No eye, ଅନ୍ଧ । ଏଇଟା ଖାଣ୍ଟି ସୁନା—ସଇ ସୁନା । ସେଇଟା rold gold, ଆଉ ପଞ୍ଚମ ଜର୍ଜ ନିଜ ହାତରେ ଦେଇନ୍ଥି ତାଙ୍କୁ ମାଷ୍ଟରମାନେ ବାଣ୍ଟୁଥିଲେ । ଜମିନ୍ ଆସମାନ୍ ଫରକ୍ ।

ମୁଁ କହିଲି ଏହାର ମୂଲ୍ୟ ସ୍ୱାଧୀନ ଭାରତରେ କଣ ?

ହଠାତ୍ ଗୋବର୍ଦ୍ଧନ ଦାସ ମୁଖର ଭଙ୍ଗୀ ବଦଳାଇ କହିଲେ—ଆଃ ବୁଢ଼ାର କଥାପଦେ—ମନଲାଖି କଥା । ଏମିତି କଥା ପଦେତ କେହି କହି ନାହିଁ ଆଜି ଯାଏ—ତୋ ଛଡ଼ା । କିନ୍ତୁ ଗୋଟାଏ କଥା । ସବୁ ବାଡ଼େ—ମଣିଷର ଇଲମ ବାଡ଼େ । ଯିଏ ଯେଉଁଠିକୁ ଯାଉ—ମଣିଷର ଯୋଗ୍ୟତାଟା କିଏ କଣ ଗଡ଼ାଇ ପାରେ ? ଇଂରାଜୀ ଗୁଲିଗଲେ ବୋଲି କଣ ମୋ ଯୋଗ୍ୟତାକୁ ଛଡ଼ାଇ ନେଇଛନ୍ତି । ସେ ଯୋଗ୍ୟତା ଥିଲା ବୋଲି ହେଇତ ଦେଖ—ସେ ଯେଉଁ କାଠର ହାତ ବାକ୍ସ ଦେଖୁଛୁ—ଇମିତି ସିମିତି ନୁହେଁ । କିଏ ଦେଇଛି ଜାଣ ? ଗାନ୍ଧୀ-ଗାନ୍ଧୀ—ମହାତ୍ମା ଗାନ୍ଧୀ ଯେତେବେଳେ ବଙ୍ଗଳାରେ ସୁବ ସ ଦଳ ମହାତ୍ମାଗାନ୍ଧୀଙ୍କୁ ଯୋତା ମୋଡ଼ାଉଡ଼ଲେ—ସେତେବେଳେ ରକ୍ଷା କଲା କିଏ ? ଏଇ ଗୋବର୍ଦ୍ଧନ ଦାସ । ଗାନ୍ଧୀ ଖୁସି ହୋଇ ମୋତେ ଏ ବାକ୍ସଟା ଦେଇଛନ୍ତି ଠିକ୍ ଆଗରୁ ଏ ବାକ୍ସଟା ଜଣେ ତାଙ୍କୁ ଉପହାର ଦେଇଥାଏ । ନିଲାମରେ ଏହାର ମୂଲ୍ୟ ହୋଇଥାଏ ୧୦ ହଜାର ଟଙ୍କା ଦସ ହଜାର ଟଙ୍କା ଦେଇ ସାରିଥିଲି ।

ବାକ୍ସ ନେବାର କଥା । ଗାନ୍ଧୀ ସେ ଟଙ୍କା ଫେରାଇଦେଇ ଟମାଟେ ଏଣ୍ଟା ଦେଲେ । ଏତେ କଥା କାହିଁକି ? ଗାନ୍ଧୀଙ୍କୁ ଗୁଳି କଲା ବେଳେ ଗଡ଼େଶଙ୍କୁ ଯେଉଁ ଓଡ଼ିଆ ଧଇଲା—ସେ କିଏ ଜାଣିଛ ? ହିଁ ହିଁ—ସେକଥା କହି ଲଭ କଣ ? ମୋର ନାମରେ କି ଦରକାର କାମହେଲେ ଗଲା । ମୁଁ ତ ଧରି ପୋଲିସ ହାତରେ ଦେଇ ଦେଲି । ପୋଲିସ୍ କହିଲା ତୁମ ନାମ । ମୁଁ କହିଲି—ମୁଁ ଜଣେ ଓଡ଼ିଆ, ସେହି ମୋର ଶ୍ରେଷ୍ଠ ପରିଚୟ । ତାପରେ ପୋଲିସ ଯେତେବେଳେ ହୋ, ହା; କରୁଛନ୍ତି ଆମେ ଖସ୍ତଙ୍ଗ୍ । ତାପରେ ପଡ଼ିଲା ଖୋଜା ପୋଲିସ୍ ତ ଓଡ଼ିଆ ଓଡ଼ିଆ ହେଉଛନ୍ତି । ମୋତେ ନପାଇ ଗୋଟିଏ ଓଡ଼ିଆକୁ ଧରି ନେଇ ଗଲେ । ଓଡ଼ିଆ ନା ଓଡ଼ିଆ । ମୁଁ ଦୂରରେ ଥାଇ ନାଟ ଦେଖୁଥାଇ ଆଉ ହସୁ ଥାଏ । ଏଇ ଗୋବର୍ଧନ ଦାସଙ୍କୁ ମୁଁ ପୁଣି ଭେଟିଲି ସାତ ଆଠ ବର୍ଷ ପରେ ସେଇଠି, ସେଇଜାଗାରେ । ଗୋଟାଏ ପ୍ରବାଦ ଉଠିଗଲା ଯେ ଗୋବଧନ ଦାସେ ଗୁଳିଗଲେଣି କିନ୍ତୁ ସେ ଘରଟାରେ ଗୋଟାଏ ଲୋକ ଅଛି । ସେ ଅବିକଳ ତାରି ପରି ଦେଖିବାକୁ । ତାରି ପରି କଥା । ତାରି ପରି ଆଖି, କାନ, ହାତ, ଗୋଡ଼ । କିନ୍ତୁ ସେ ଗୋବର୍ଧନ ଦାସ ନୁହନ୍ତି । ଗୋବର୍ଧନ ଦାସ କେଉଁ ମନ୍ତ୍ରୀଙ୍କର ମଟରରୁ ତଳେ ଚୁପାପଡ଼ି ମରିଯାଇ ଥିଲେ ବୋଲି ଖବର କାଗଜରେ ବାହାରି-ଯାଇଥିଲା । ଅତଏବ ଏ ଗୋବର୍ଧନ ଦାସ କେବେ ସେ ଗୋବର୍ଧନ ଦାସ ନୁହନ୍ତି । ଅନେକ ଭୟ କରନ୍ତି ସେ ଗୋବର୍ଧନ ଦାସଙ୍କ ଭୂତ । ଗୋବର୍ଧନ ଦାସ ତ ଆଗରୁ ଜୁଟର୍ ପଦାକୁ ବାହାରକୁ ବାହାରୁ ଥିଲେ ଏବେକାର ଗୋବର୍ଧନ ଦାସେ, ଅନେକ ଜାଗାରେ ଦେଖିବାକୁ ମିଳନ୍ତି । ମାତ୍ର ଚୁପ୍ ଚୁପ୍ । କେହି କଥା କହିଲେ ଉତ୍ତର କେବଳ 'ହୁଁ' ବା 'ନା' । ଆଉ ତାଙ୍କ

ପାଖକୁ ଯିଏ ଯାଏ ସେ କୁଆଡ଼େ ଆଉ ସେଠୁ ଫେରିବା କଷ୍ଟ । ସେଥିପାଇଁ ଲୋକେ ସେଠିକୁ ଯିବା ଆସିବା ବନ୍ଦ କରି ଦେଇଛନ୍ତି । ଅଦ୍ଭୁତ କଥା ଏଇ ଗୋଟିକ ଗୋବର୍ଧନ ଦାସ ଲକ୍ଷେ ଗୋବର୍ଧନ ଦାସ ହୋଇ ପାରନ୍ତି । ଖବର କାଗଜରେ ଅନେକ ସମୟରେ ଏଣ୍ଟୁ ଗୋବର୍ଧନ ଦାସ ସଙ୍ଘ ସମିତିରେ ଯୋଗ ଦେବା କଥା ବାହାରେ ।

ବନ୍ଧୁଙ୍କ ଓ ମୋନ ମୁଁ ଗଲି ସେ ଭୂତ କୋଠୀ ଭିତରକୁ । ଏଥରକ ଖଦଡ଼ ଗୁଡ଼ ମିଳି ପିନ୍ଧି ମୁଁ କମ୍ୟୁନିଷ୍ଟ ସାଜିଗଲି ଏବଂ ଦେଖିବାକ୍ଷଣି ଗୋଟାଏ ଲାଲ ସଲାମ୍ ପକାଇ ଦେଲି । ସାଟେଙ୍କ ସାଟେଙ୍କ ଗୋବଧନ ଦାସ ଠିଆହୋଇ ପଡ଼ି ପୂର୍ବ କାଇଦାରେ ହାତକୁ ମୁଠା ମୁଠା କରି ଉତ୍ତର ଦେଲେ ।

ଆପଣ ଆସିଛନ୍ତି । ମୁଁ ଆପଣଙ୍କୁ କେଉଁଟି ଦେଖିଛି । ଆପଣଙ୍କୁ ଅପେକ୍ଷା କରି ମୁଁ ବଞ୍ଚିଛି ଜାଣିବେ । କେଉଁ କେଉଁ ଦିନରୁ ମୁଁ ଦେହ ରଖି ଯାଇ ପାରନ୍ତିଣି । କିନ୍ତୁ ଏ ସମ୍ପତ୍ତି ମୁଁ କାହାକୁ ଦେଇଯିବି ? ଗାଇଲେ ଗାଇଲେ ଆପଣ ହରେ ମୋର ସେହି ପ୍ରିୟ ସଙ୍ଗୀତ—"ଲାଲ ଓଡ଼ିଶା ମାଟି !"

ମୁଁ କହିଲି—ଓଡ଼ିଶାମାଟି ଆଉ ଲାଲ ହେବାର ଆଶା ନାହିଁ । ଗଲି ଦଶ ବର୍ଷ ଧରି କୃଷ୍ଣ ହୋଇ ଗଲାଣି । ଥରେ କ ହେଲେ ନବେ । । କଳା ବଜାର କଳାପୋଡେଇ ।

ଗୋବର୍ଧନ ଦାସେ କହିଲେ—ଆରେ କଳାଟା କଣ ଲାଲ ଠାରୁ ଅଲଗା ? ଲାଲ ଉପରେ ନୀଳ ଚଢ଼ିଲେ ଓ କଳା କମ୍ୟୁନିଷ୍ଟ ଲାଲ ଆଉ କଂଗ୍ରେସ ନୀଳ—ମିଶିଗଲା—କଳା । କ୍ଷତି କଣ ? ଓଡ଼ିଶାର ଲାଲ ମାଟି ଯିବ କୁଆଡ଼େ ? ସେ ଏଇଠି ଅଛି ଓ ଓ ଚିରଦିନ ରହିବ । ସେ ଲାଲ ଓ ନୀଳ ମାଟି ସମ୍ମିଶ୍ରଣରେ କଳା

ଓଡ଼ିଶା ମାଟିରେ ମୁଁ କବର ନେବ ତାର ଉପରେ କେତେ ଗୋବର୍ଦ୍ଧନ ଦାସ ରକ୍ତ ବାମ୍ପର ଗର୍ଜି ଉଠିବେ । ତମେ ତମେ ହେବ ମୋର ଉତ୍ତରାଧିକାରୀ ।"

କହୁ ଗୋବର୍ଦ୍ଧନ ଦାସେ ଯେତେବେଳେ ମୋ ଦୁଇ କାନ୍ଧରେ ଦୁଇ ହାତ ପକାଇ ଚିପିଦେଲେ ଆଗ୍ରହ ଓ ପ୍ରେମରେ —ମୁଁ ଭାବିଲି ପୈତୃକ ପ୍ରାଣଟା ଗଲା ଏଥର । ପ୍ରକୃତରେ ଭୂତ ପାଲରେ ପଡ଼ିଗଲିତ । ତା ପରେ କୋହଳ କରି ଦେଇ, ମୋତେ ବୁଲାଇ ନେଇ ଗ୍ରୁପ ଫଟୋକୁ ଦେଖାଇ କହିଲେ—ଦେଖୁଛ କମ୍ରେଡ଼—ସେଠି କିଏ—?"

ମୁଁ କହିଲି "ରାଜା ପଞ୍ଚମଜର୍ଜଙ୍କ ପରି ଦିଶୁଛି ।" "ପଞ୍ଚମଜର୍ଜଙ୍କୁ ତୁମେ ଦେଖିଛ ଆଖିରେ ? ତାର ଫଟୋ ଦେଖିଛ—ଆଜକା ବଚ୍ଚା—ଆଚ୍ଛାକରି ଦେଖ—ସେ କିଏ ।"

ମୁଁ ଚୁପ୍ ରହିଲି । ଆଶ୍ଚର୍ଯ୍ୟ ହୋଇଗଲି ! ଗୋବର୍ଦ୍ଧନ ଦାସ କହିଲେ—"ଭଲକରି ଚିହ୍ନ ସେ କିଏ । ଚିହ୍ନିଛ ? କମ୍ରେଡ଼ ଷ୍ଟାଲିନ୍ ।"

"ଷ୍ଟାଲିନ୍ !" ମୁଁ ଚମକି ପଡ଼ିଲି ।

'ହିଁ—ହିଁ—ଷ୍ଟାଲିନ୍ ।" ଗୋବର୍ଦ୍ଧନ ଦାସେ କହିବାରେ ଲଗିଥାନ୍ତି—ସମ୍ରାଟ ପୋଷାକରେ ଦେଖୁଛ ବୋଲି ଆଶ୍ଚର୍ଯ୍ୟ ଲାଗୁଛି ନୁହେଁ ? ଜାଣିଛ; ଆଜି ଷ୍ଟାଲିନ୍‌କୁ କାହିଁକି ରୁଷିଆରେ ଘୃଣା କରୁଛନ୍ତି ଜାଣ ? ତାର ପ୍ରକୃତ ଉଦ୍ଦେଶ୍ୟ ଥିଲା—ପୃଥିବୀରେ ସମ୍ରାଟ ହେବ । ସେଥିପାଇଁ ସେ କଥା ଆମେ କେତେ ଜଣ ମାତ୍ର କମ୍ରେଡ଼ ଜାଣିଥିଲୁ । ସେଠି ଯେତେଜଣ କମ୍ରେଡ଼ ଅଛନ୍ତି ଦେଖୁଛ ? ତା ଭିତରେ ମୁଁ ବି ଅଛି । ଷ୍ଟାଲିନ୍ ମୋ ସହିତ ସେଠି ହାତ ମିଳାଉଛନ୍ତି । ସବୁ ଜାତିର ଲୋକ ଷ୍ଟାଲିନ୍‌ର ଘନିଷ୍ଠ

ବନ୍ଧୁ—ଅନ୍ତରଙ୍ଗମାନେ ସେଠି ଅନନ୍ତ । ସେଠି ମୁଁ ଏକମାତ୍ର ଭାରତୀୟ । ଭଇସ୍‌ ଡ଼ିପୁଙ୍କ ସହିତ ଲଣ୍ଡନ ଯାଇ ସେଠୁ ରୁଷ ବି ପଳାଇଲି । ଷ୍ଟାଲିନ୍‌ର ବିଶ୍ୱାସ ଭାଜନ ହେବାକୁ ମୋତେ ବେଶୀ କ୍ଷଣ ଲଗିଲା ନାହିଁ । ତୁମେ ମାନବେନ୍ଦ୍ର ରୟଙ୍କୁ ଜାଣ ? ସେ ସେଠି ଥିଲେ । ସେ କଥାଟାର ଟେର ମୋ ଠାରୁ ପାଇ ଉତ୍ତ୍ୟକ୍ତ କରିଦେବାକୁ ଯାଉଥିଲେ । ତଡ଼ା ଖାଇଲେ ମୋର ପରାମର୍ଶରେ । ଏ କଥା କେହି ଜାଣନ୍ତି ନାହିଁ । ଆମର ପ୍ଲାନ୍ ଆଗରୁ ଠିକ୍ ହୋଇଥିଲା । ଏପରିକି ଦିନେ ଯେ ଷ୍ଟାଲିନ୍ ପୃଥିବୀର ସମ୍ରାଟ ହେବେ ସେ କଥାରେ ଆମେ ନିଶ୍ଚିତ ଥାଇ, କିପରି ସେ ଗାଦିନସିନ ହେବେ ତାର ରିହାଲରସେଲ କରିଥିଲୁ । ସେଥିପାଇଁ ଷ୍ଟାଲିନ୍‌ର ଉକ୍ରେଟରେ ନିଶ କାଟି ଦାଢ଼ି ରଖାଇ ଦେଇଥିଲୁ । ବୁଝିଲ୍ ? ମାତ୍ର ପରାମର୍ଶ ଦେଲି ଯେ ବ୍ରିଟିଶ୍ ସଙ୍ଗରେ ଅର୍ଥାତ୍ ପୁଞ୍ଜିବାଦୀ ସାମ୍ରାଜ୍ୟବାଦୀ ସହିତ ସାମ୍ୟବାଦୀ ରୁଷିଆ ବନ୍ଧୁତା ନ କଲେ ଡିକ୍‌ଟେଟର ସମ୍ରାଟ ହେବା ସମ୍ଭବ ନୁହେଁ । ତେଣୁ ଷ୍ଟାଲିନ୍ ମୋତେ ଛାଡ଼ିଦେଲେ । ସେ ଚାହୁଁଥିଲେ ଏକଛତ୍ର ସମ୍ରାଟ । ମୁଁ ଚାହୁଁଥିଲି ଲାଲ ସଙ୍ଗରେ ନୀଳ ମିଶୁ । ଆଜି ଓଡ଼ିଶାର କମ୍ୟୁନିଷ୍ଟମାନେ ଯେଉଁ ମତବାଦକୁ କାମିକାମି କରୁଛନ୍ତି ମୁଁ ଟିକ୍ ସେଇଆ ଚାହୁଁଥିଲି ସେଦିନ ।'ଆଜି ମୋ ନୀତିର ଜୟ ହୋଇଛି । ବୋଲେ ଗୋବର୍ଦ୍ଧନ ଦାସଙ୍କ ଜୟ ।"

କହି ହାତ ମୁଠାକୁ ଉପରକୁ ଉଠାଇ ଦେଲେ ଗୋବର୍ଦ୍ଧନ ଦାସେ । ତାପରେ ଘରର ଗୋଟି ଗୋଟି ଜିନିଷ ମୋତେ ଚିହ୍ନାଇ ଦେଲେ—କିଏ ସାଇବେରିଆ ଭାଲୁର ବାଳ, କିଏ ତୁଷାର ମାନବର ଚମ, କିଏ ଉତ୍ତରମେରୁ ଜୀବର ଦାନ୍ତ । ଦିନେ ସେ

ଯେଉଁସବୁ ଚିଜକୁ ଅନ୍ୟାନ୍ୟ ଦେଶର ବୋଲି ପରିଚୟ ଦେଇଥିଲେ, ସବୁ ଋଷିଆର କହି ଗର୍ବ କରିବାକୁ ଲାଗିଲେ ।

ଶେଷରେ ମୋତେ ଅନୁରୋଧ କଲେ—ମଲାବେଳକୁ ଯେପରି ଲାଲ୍ ଓ ନୀଳ ମିଶା କଳା କନାରେ ତାଙ୍କୁ ଢଙ୍କା ଯାଏ । ତାଙ୍କର ସେହି ଘରର ସବୁ ସମ୍ପତ୍ତି ମୋ ନାମରେ ଉଇଲ କରି ଦେଇ ଯିବେ ଏବଂ ଆବଶ୍ୟକ ମନେହେଲେ ତାହା ଓଡ଼ିଶା ମିଉଜିୟମରେ ଯେପରି ରଖାଯାଏ ମୋତେ ତାର ବ୍ୟବସ୍ଥା କରିବାକୁ ହେବ ବୋଲି ହୁକୁମ ନାମା ଜାରି କଲେ ।

ତାପରେ ମୁଁ ସ୍ୱଦେଶ ଫେରି ଆସିଲି । ଗୋବର୍ଦ୍ଧନ ଦାସେ ତ ଏ ପର୍ଯ୍ୟନ୍ତ ମରି ନାହାନ୍ତି । ମୁଁ ତାଙ୍କ ଯଥା ସର୍ବସ୍ୱର ଅଧିକାରୀ ହୋଇନି । ମୋର ମନେହୁଏ—ବଳି ଆଦି ଯାକେ ତ ରହିଥିବେ । ଚିରଦିନ ପାଇଁ ହନୁମାନ, ଅଶ୍ୱତ୍ଥାମା ପ୍ରଭୃତିଙ୍କ ପରି ଏ କଳି ଯୁଗରେ ସେହି ଗୋବର୍ଦ୍ଧନ ଦାସ ହିଁ ଏକା ଅମର ହୋଇ ରହି ଅଛନ୍ତି ।

ଏ ଗୋବର୍ଦ୍ଧନର ଅର୍ଥ ଗୋବର୍ଦ୍ଧନ ଗିରି ନୁହେଁ—ଗୋରୁ ବର୍ଦ୍ଧକ ଷଣ୍ଢ ନୁହେଁ । ଦେଶରେ ମଣିଷ ଗୋରୁମାନଙ୍କର ବର୍ଦ୍ଧନକାରୀ ଗୋବର୍ଦ୍ଧନ ଦାସ । ଆପଣ ସମସ୍ତଙ୍କର ଅତି ପରିଚିତ ବନ୍ଧୁ । ଏକା ମୋହରି ନୁହନ୍ତି । ଆଶା କରେ ଆପଣ ଏଥର ଗୋବର୍ଦ୍ଧନ ଦାସଙ୍କ ପରିଚୟ ପାଇ ପାରିବେ ।

—ଃ୦ଃ—

# ଜୁଆ ଖୋର

ଇଂରାଜୀରେ ଗୋଟିଏ କଥା ଅଛି Great men think alike ବଡ଼ବଡ଼ଆ ମାନଙ୍କର ଚିନ୍ତାଧାରା ଏକରକମର । କିନ୍ତୁ, ହରିଆ, ହରି ପଧାନ, ଶ୍ରୀଯୁକ୍ତ ହରିହର ପ୍ରଧାନ କହନ୍ତି—Great men act alike—ବଡ଼ବଡ଼ଆଙ୍କ କାର୍ଯ୍ୟ କଳାପ ମଧ୍ୟ ଏକା ଧରଣର ।

ହରିହର ପ୍ରଧାନଙ୍କୁ ଆପଣ ଜାଣିଥିବେ । ତାଙ୍କ ନାମ ଥିଲା ହାଡ଼ିଆ—ତା ପରେ ହାଡ଼ିବନ୍ଧୁ । ପରେ ରାଜନୀତିରେ ଯୋଗଦେଇ କଂଗ୍ରେସ ନେତା ହେଲାପରେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କୁ କଥାରେ କାର୍ଯ୍ୟରେ ଅନୁକରଣ କରୁ କରୁ ନାମଟାକୁ ମଧ୍ୟ ହରେକୃଷ୍ଣ କରିଦେଲେ । ମାତ୍ର କାଳକ୍ରମେ ସେ ଦେଖିବାକୁ ପାଇଲେ ଯେ ତଦ୍ଦ୍ୱାରା ତାଙ୍କର ବିଶେଷ ଅସୁବିଧା ଘଟୁଛି ।

ଭୁବନେଶ୍ୱରରେ ଲକ୍ଷେ ଲିଙ୍ଗରାଜ ଥିଲେ ବି ଗୋଟିଏ ଲିଙ୍ଗରାଜ ନାଁରେ ସବୁଯାଏ । ହରେକୃଷ୍ଣ ପ୍ରଧାନ ଯାହା ଯାହା ଭଲ କଥା କଲେ ବା କହିଲେ, ଖବର କାଗଜରେ ବାହାରିଲା ବେଳକୁ ସମସ୍ତେ ବୁଝିଲେ ଯେ ହରେକୃଷ୍ଣ ମହତାବଙ୍କ କିସ୍ସା ବା କୁହା । ତେଣୁ ସେ ନାମଟାକୁ ବଦଳାଇ ହରିହର କରିଦେଲେ ।

ହରିହର ପ୍ରଧାନ ଯେତେବେଳେ ଠିଙ୍କା ପଇସା କିଛି କରି, ଆଉକିଛି ହାତ ପଇଠ କରିବା ଉଦ୍ଦେଶ୍ୟରେ କଂଗ୍ରେସରେ ଯୋଗ-ଦେଲେ ସେତେବେଳେ ସେ ସର୍ବପ୍ରଥମ ଲକ୍ଷ୍ୟ କଲେ ଯେ ପ୍ରତ୍ୟେକ ମିଟିଂରେ ତାଙ୍କୁ କୌଣସି ନା କୌଣସି କଂଗ୍ରେସ ସଭ୍ୟଙ୍କୁ ହଳଏ ଲେଖାଏ ଜୁତା ଦେବାକୁ ପଡ଼ିଲା । କଂଗ୍ରେସ ପାଣ୍ଠିକୁ ତାଙ୍କୁ ଯେତେ ଦାନ କରିବାକୁ ପଡୁଥିଲା ଏଗୁଡ଼ିକ ତାର ଦକ୍ଷିଣା ସ୍ୱରୂପ ବୋଲି ସେ କ୍ରମେ ସ୍ୱୀକାର କରିବାକୁ ଲଗିଲେ ।

ମାତ୍ର ଦିନୁଁ ଦିନ କଂଗ୍ରେସ ସଭା ଯେତେ ଅଧିକ ବସିଲା— ହରିହର ସେତିକି ସେତିକି ଦକ୍ଷିଣା ଦେବାକୁ ବାଧ୍ୟ ହେଲେ । ଏକଥା ତାଙ୍କ ଗୃହିଣୀ ଜାଣିଲେ । ଘରଆଡ଼ୁ ଆଦେଶ ହେଲା— କଂଗ୍ରେସ ମିଟିଂରେ ଯୋଗଦେବା ବନ୍ଦ । ହରିହର କହିଲେ— ମିଟିଂରେ କି ଦୋଷ । ମିଟିଂରେ ଯୋଗଦେଲା ଲୋକେ ସିନା ଜୁତା ଖୋର୍—ମିଟିଂ ତ ଜୁତା ଖୋରି ଶିଖାଉ ନାହିଁ । ଏସବୁ ଜୁତା ଖୋରି ମିଟିଂ ଘର ଭିତରେ ହୁଏ ନାହିଁ । ଯାହାହୁଏ ଘର ବାହାରେ ବାରନ୍ଦାରେ ହୁଏ । ତେଣୁ ଜୁତା ନ ପିନ୍ଧି ଗଲେ ମାମଲା ଛୁଡ଼ିଯିବ ।

ଶ୍ରୀଯୁକ୍ତ ହରିହର ଏଣିକି ବିନା ଜୁତାରେ କଂଗ୍ରେସ ମିଟିଂରେ ଯୋଗଦାନ କରିବାକୁ ଲଗିଲେ । ପତିଭକ୍ତା ଗୃହିଣୀ ପୁଣି ଏଥିରେ ଆପତ୍ତି ଉଠାଇଲେ । କାରଣ ସ୍ୱାମୀ ହରିହର ଗୃହରେ ପ୍ରବେଶ

କଲଷଣି ସତୀ ସାଧ୍ୱୀ ପତିବ୍ରତା ପତ୍ନୀ ଗୃହକରଙ୍କ ହାତକୁ ନ ଦେଇ ନିଜେ ସ୍ୱାମୀଙ୍କ ଗୋଡ଼ରୁ ଜୋତା କାଢ଼ ପକାନ୍ତି । ଆଜିକାଲି ତାଙ୍କୁ ଆଉ ପାତିବ୍ରତ୍ୟର ପ୍ରମାଣ ଦେବା ପାଇଁ ସୁବିଧା ମିଳୁ ନାହିଁ । କିନ୍ତୁ ସେ ଆପତ୍ତି ହରିହର ଗ୍ରହଣ କଲେ ନାହିଁ । ତଥାପି ପତିବ୍ରତା ପତ୍ନୀ ପ୍ରତିଦିନ ହରିହର ବାବୁ ଆସିବା ବେଳକୁ ଖାଲି ଗୋଡ଼ରେ ବି ହାତ ବୁଲାଇ ଦେଇଯାନ୍ତି । ନ ହେଲେ ଅଭ୍ୟାସଟା ଛୁଟିଯିବ । ପଧାନୁଣୀ ଚମକି ପଡ଼ିଲେ—ଏଁ ? ଇଏ କା ଜୋତା ଲେ ମା ?

ପଧାନ କହିଲେ—ଜୋତା ? ଜୋତା କୋଉଠୁଁ ଆସିବ ? କଣ ସପନ ଦେଖୁଛ କି ? ହରିହର ପ୍ରଧାନ ଜୋତା ପିନ୍ଧି କେବେ କଂଗ୍ରେସ ସଭାକୁ ଯା'ନ୍ତି ନାହିଁ ।

ଗୃହିଣୀ କହିଲେ—କିନ୍ତୁ ଜୋତା ପିନ୍ଧି କଂଗ୍ରେସ୍ ସଭାରୁ ଆସି ପାରନ୍ତି ନାହିଁ, ଜୋତା କୋତା ? କଂଗ୍ରେସରେ ଏମିତି କିଏ ପୁଅ ଅଛି ଯେ ମୋତେ ପୁଣି ଜୋତା ଦବ । ବରଂ କଂଗ୍ରେସରେ ଯେତେ ନେତା ଅଛନ୍ତି—ସମସ୍ତଙ୍କୁ ମୁଁ ହଳେ ହଳେ ଦେଇଛି । କଂଗ୍ରେସରେ କେତେଜଣ ନେତା ଅଛନ୍ତି, ମୁଁ କେଉଁଠା କଂଗ୍ରେସ ସଭାରେ ଯୋଗ ଦେଲେଣି ତାର ଗୋଟିଏ ଷ୍ଟାଟିଷ୍ଟିକ୍‌ସ୍ ରଖିଲେ ଏ କଥା ଜଣାଯିବ ।"

ଗୃହିଣୀ କହିଲେ—"ତମକୁ ସିନା ଜୋତା କେହି ଦେଇ ନାହାନ୍ତି—ତମେ କାହାର ଜୋତା ବନ୍ଧା ଆଣି ଥାଇପାର ତ ।"

"କଦାପି ନୁହେଁ—କାହିଁ ମୋ ଗୋଡ଼ରେ ଜୋତା କାହିଁ ?"

"ମଲା ମ କି ଅଲଜୁକ କଥା ? ତମ ଆଖିରେ କଣ ଇଲିସି କଣ୍ଟା ଡ଼ଳିଛି କି ? ଏଡ଼େ ସୁନ୍ଦର ଜୋତା ହଳେ—କଣ ନୂଆ କିଣି ଆଣିଲ କି ?"

"ଏଁ ଜୋତା ? ତମ ମୁଣ୍ଡ ଖରାପ ହେଲାଣି । ମୋ ଗୋଡ଼ରେ ଜୋତା କେଉଁଠୁ ଆସିଲା ?"

ଏତିକିବେଳେ ଦାଣ୍ଡରେ କିଏ ଡାକିଲା—ବେହେରା—ବେହେରା ଦୌଡ଼ିଗଲେ । ଖବର ଆଣି ଦେଲେ ମୁଖ୍ୟମନ୍ତ୍ରୀ—ଚିଠି ଦେଇଛନ୍ତି । ଚିଠିରେ ଲେଖାଅଛି—

ପ୍ରିୟ ହରିହର ବାବୁ,

ଆପଣ ଭୁଲରେ ମୋ ଜୋତା ହଳକ ଗୋଡ଼ରେ ଗଳେଇ ଚାଲିଯାଇଛନ୍ତି । ଆପଣଙ୍କ ଜୋତା ହଳକ ବୋଧହୁଏ ଆପଣ ଭୁଲରେ ଛାଡ଼ି ଯାଇଥିଲେ । ମୁଁ ସେ ଜୋତା ଏଇ ଲୋକ ହାତରେ ଆପଣଙ୍କୁ ଦେଉଛି—ଆପଣ ମୋ ଜୋତା ହଳକ ଦୟାକରି ପତ୍ରବାହକ ହାତରେ ପଠାଇ ଦେବେ ।"

ହରିହର ଅବାକ ହୋଇଗଲେ—"ଏଁ ତେବେ ତମେ ସତ କହୁଚ—ପୁଅର ମା ? ମୋ ଗୋଡ଼ରେ ଜୋତା ସେ—ସେ ପୁଣି ମନ୍ତ୍ରୀଙ୍କ ଜୋତା ! ମନ୍ତ୍ରୀଙ୍କ ଜୋତା ତେବେ ଜୋତା ପରି ଲାଗେ ନାହିଁ ? ଆହା କି ସୁନ୍ଦର ଜୋତା ସତେ ! ହେଉ, ହେଉ, ତେବେ ପଠେଇ ଦିଅ—ପଠେଇଦିଅ ମନ୍ତ୍ରୀଙ୍କ ଜୋତା ମନ୍ତ୍ରୀଙ୍କୁ ଦେଇଦିଅ ।"

ଗୃହିଣୀ କହିଲେ—"କିନ୍ତୁ ଏ ଜୋତା ଯାହାକୁ ମନ୍ତ୍ରୀ ପଠାଇ ଦେଇଛନ୍ତି—ସେ ପୁଣି କା'ର—ତମର ତ ନୁହେଁ ।"

"ଓ ହୋ—ଏ ଜୋତା ପୁଣି ମୋତେ କିଏ ଦେଲା !

"ଥାଉ ଥାଉ—ଘରପୋଡ଼ରୁ ଯାହା ମିଳିଲା !"

"ଏଁ ପୁଅର ମା ତମେ ଏତେ ଛୋଟ ଲୋକ । ମୁଁ ସରକାର ପଇସା ଖାଇବି ବୋଲି—ମନ୍ତ୍ରୀଙ୍କ ଜୋତା ପାଇବି ବୋଲି କଣ ଯାହା ଜୋତା, ଯା' ତା ଧନ ଖାଇବି ? ସେ କଥା ହବ ନାହିଁ । ମୁଁ ଆଜି ଓଡ଼ିଆ ସମାଜ, ଇଂରାଜୀ ସମାଜରେ ଆରମ୍ଭ କରିଦେବି ।

ତହିଁ ଆରଦିନ ସମ୍ବାଦ ପତ୍ରରେ ବାହାରିଲା—

ଜୋତା ମିଳୁଛି—ଜୋତା ମିଳୁଛି—

ଗତ ତା........ରିଖ........ଠାରେ ଅନୁଷ୍ଠିତ କଂଗ୍ରେସ ପାଣ୍ଠି ସଂଗ୍ରହ ଉପାୟ ଉଦ୍ଭାବନ କମିଟିରେ ଯୋଗଦେଇ ଥିବା କୌଣସି ଭଦ୍ରବ୍ୟକ୍ତି ଭୁଲରେ ଗୁଡ଼ ମୁଖ୍ୟମନ୍ତ୍ରୀଙ୍କୁ ଦେଇ ଯାଇଥିଲେ । ମୁଖ୍ୟମନ୍ତ୍ରୀ ତାହା ଦୟାକରି ମୋତେ ଦେଇଛନ୍ତି । ଯେଉଁ ବ୍ୟକ୍ତି ପ୍ରମାଣ ଦେଖାଇ ପାରିବ, ମୁଁ ତାକୁ ଅନାୟାସରେ — ଅବାଧରେ ଏ ଜୋତା ଦେଇ ପାରିବି । ମାତ୍ର ସେ ବ୍ୟକ୍ତି ଜଣେ କଂଗ୍ରେସ ପ୍ରେମୀ ହୋଇଥିବା ଆବଶ୍ୟକ ।

ବିଶେଷ ଦ୍ରଷ୍ଟବ୍ୟ—ଗୋଡ଼ର ମାପ ପଠାଇବା ଅଶ୍ଳୀଳ ଓ ଆପତ୍ତି ଜନକ । ତେଣୁ ଓଠ ପାଖରୁ କାନ ମୂଳଯାଏ ଯେତେ ଇଞ୍ଚ ହେବ ତାହା ଜଣାଇ ଦେଲେ ଯଥେଷ୍ଟ ହେବ । କାରଣ ଏହା ବିଜ୍ଞାନ ସମ୍ମତ ଯେ ଜଣକ ଗୋଇଠିଠାରୁ ଗୋଡ଼ର ଆଙ୍ଗୁଳି ମୂଳ ପର୍ଯ୍ୟନ୍ତ ଯେତେ ଇଞ୍ଚ—ତାହାର ଓଠ ଠାରୁ କାନ ମୂଳ ପର୍ଯ୍ୟନ୍ତ ସେତିକି ଇଞ୍ଚ ମାପ ହେବ । ପରୀକ୍ଷା ପ୍ରାର୍ଥନୀୟ । ଇତି ।

ଶ୍ରୀ ହରିହର ପ୍ରଧାନ
ମେନେଜିଂ ଡାଇରେକ୍ଟର ଫୁଲ୍‌ସ୍ ପେରେଡ଼ାଇଜ ଇଣ୍ଡଷ୍ଟ୍ରିଜ୍
ପ୍ରାଇଭେଟ୍ ଲିମିଟେଡ଼୍
ଗୋଇଠି ସାହି, କଟକ—୨

ତହିଁ ଆରଦିନ ଯେତିକି ଗୁଡ଼ାଏ ଚିଠି ଗାଲର ମାପ ସହ ଆସିଲା ତନ୍ମଧ୍ୟରୁ ଗୋଟିଏ ଅତି ବିଚିତ୍ର ପତ୍ରର ଅବିକଳ ନକଲ ତଳେ ଦିଆଗଲା ।—

ମହାଶୟ !

ଆପଣଙ୍କ ବଳ୍ପିତ ଅବସରେ ଉଲ୍ଲିଖିତ ସଭାରେ ମୁଁ ଯୋଗଦେବାର ଦୁର୍ଭାଗ୍ୟ ଲଭ କରିଥିଲି । ତାହାହିଁ ମୋର ପ୍ରଥମ କଂଗ୍ରେସ ସଭାରେ ଯୋଗଦାନ, ମୋ ଜୋତା ହଳକ ନୂତନ ଲେଡ଼ିଜ୍ ସାଣ୍ଡାଲ୍ । ଆପଣମାନେ ଚିହ୍ନନ୍ତି ନାହିଁ ।—ମାତ୍ର ଆପଣଙ୍କ ସ୍ତ୍ରୀ ମୋତେ ଜାଣନ୍ତି । ଆମେ ଦୁହେଁ ଅତି ଘନିଷ୍ଠ ବନ୍ଧୁ —ଏକ ଆତ୍ମା— ଦେଖିବାକୁ ଏକା ପ୍ରକାର—ଏକା ଉଚ୍ଚ ମଧ୍ୟ । ଏପରିକି ମୋର ପୋଷାକ ପତ୍ର ଓ ଫେସନ ଦେଖି ସେ ତାଙ୍କର ବଜାର ସଉଦା କରନ୍ତି । ମାତ୍ର ତାଙ୍କୁ ଅନୁକରଣ କରିବାକୁ ଚେଷ୍ଟାକରି ମୁଁ ଆଜିଯାଏଁ ଆପଣଙ୍କ ପରି ଗୋଟିଏ ସ୍ୱାମୀ ପାଇ ପାରିନାହିଁ । କେତେକ ବନ୍ଧୁଙ୍କ ଅନୁରୋଧ କ୍ରମେ ମୋର ଭାଗ୍ୟ ପରିବର୍ତ୍ତନ ଆଶାରେ ମୁଁ କଂଗ୍ରେସରେ ଯୋଗଦେଇ ମହିଳା ଆନ୍ଦୋଳନରେ ଭାଗ ନେବା ଫଳରେ ସେଦିନ ମୋତେ ଉକ୍ତ ସଭାରେ ଭାଗ ନେବାକୁ ପଡ଼ିଥିଲା । ଦୁଃଖର କଥା, ସଭା ଭଙ୍ଗ ପରେ ମୋ ଜୋତା ହଳକ ସ୍ଥାନାନ୍ତରିତ ହେବାର ଦେଖିଲି । ସେ ଜୋତାରେ ମୋର ନବ ଲିଖିତ ପାଦାଙ୍ଗୁଳିର ଲକ୍ଷ୍ମୀ ଚିହ୍ନ ହୁଏତ ଥିବ । ସେ ଜୋତା ହଳକ ଏଭଳି ଚକ୍‌ଚକ୍ ଓ ପଲିସ୍ ହୋଇଥିଲା ଯେ କେତେକ ସଭ୍ୟଙ୍କର ଅଙ୍ଗୁଳି ମୁଦ୍ରା ବା ଟିପ ଚିହ୍ନ ଆପଣ ସେଥିରେ ଅବଶ୍ୟ ପାଇବେ । ହୁଏତ, ସାମାନ୍ୟ ବା ଭିନିଂ ପ୍ୟାରିସ୍ ଆମୋଦ ଆପଣ ସେଥିରୁ ପାଇ ପାରିବେ । ସେ ଜୋତାର ଜିଭ ତଳେ ଆପଣ ଆପଣଙ୍କ ନାମଧେୟ କୌଣସି ବ୍ୟକ୍ତିଙ୍କର ସ୍ୱାକ୍ଷର ପାଇବେ । ଏତକ ସୌଭାଗ୍ୟ ଲଭ ନିମନ୍ତେ ତାଙ୍କୁ ଯେତିକି ତାରିଫ ଦେବାକୁ ପଡ଼ୁଛି, ତାହା ସରକାରଙ୍କଠାରୁ କରଜ ସୁଧରେ ଆଣି ଆପଣ ଯେତେ ଟଙ୍କା ଉଡ଼ାଇଛନ୍ତି ତାର ଏକାଦଶମାଂଶ ହେବ । ଅତଏବ

ଆପଣ ମୋର ଜୋତା ବଦଳକ ମୋ ଠିକଣାରେ ପଠାଇଦେଇ ବାଧିତ କରିବା ହେବେ । ଆପଣଙ୍କ ସ୍ତ୍ରୀ ସେଠାରେ ଉପସ୍ଥିତ ଥିବାର ଜାଣି ମୁଁ ଆଜ ମୋ ଗାଲର ମାପ ପଠାଇବା ଆବଶ୍ୟକ ମନେକଲି ନାହିଁ—ଇତି ।

ଆପଣଙ୍କର
ସଞ୍ଜୀବନୀ ପଟ୍ଟନାୟକ
ସ୍ୱରାଜ ଆଶ୍ରମ

ଅନ୍ୟାନ୍ୟ ଯେତେଜଣ ନିଜ ନିଜର ଜୋତା ହଜିଥିବାର ସଂବାଦ ଦେଲେ ସେମାନଙ୍କର ସଂଖ୍ୟା ସେ ଦିନ କଂଗ୍ରେସ ମିଟିଂରେ ଯୋଗ ଦେଇଥିବା ସଭ୍ୟ ସଂଖ୍ୟାଠାରୁ ଯଥେଷ୍ଟ ଅଧିକ । କେବଳ ଜଣେ ଭଦ୍ରଲୋକ ଜୋତା ବଦଳ ହୋଇଥିବାର ସଂବାଦ ଦେଲେ—

ମହାଶୟ,

ସେ ଦିନ ମୁଁ ମିଟିଂକୁ ଯାଇଥିଲି । ମୋର ଉଚ୍ଚତା ଚାରିଫୁଟ ପାଞ୍ଚ ଇଞ୍ଚ । ମୋ ଜୋତାର ନମ୍ବର ସାଢ଼େ ଚାରି ନମ୍ବର । ସମ୍ଭବତଃ ଆପଣଙ୍କ ସ୍ତ୍ରୀ ସେଦିନ ମିଟିଂକୁ ଯାଇଥିଲେ । ମୁଁ ତରବରରେ ସଭା ମଝିରେ ଉଠି ଆସିବାରୁ ଭୁଲରେ ତାଙ୍କ ଜୋତା ଗୋଡ଼ରେ ଗଳେଇ ବାହାରି ଆସିଲି । ଆପଣ ଯେଉଁ ଜୋତା ପାଇଛନ୍ତି ବୋଲି ଲେଖିଛନ୍ତି ତାହା ଛୋଟ ହୋଇଥିଲେ ମଧ୍ୟ ଦେଖିବେ ଯେ ତାହା ନାରୀର ନୁହେଁ—ପୁରୁଷର । ମୁଁ ଏହି ପତ୍ର-ବାହକ ହସ୍ତରେ ଆପଣଙ୍କ ସ୍ତ୍ରୀଙ୍କ ଜୋତା ଫେରାଇ ଦେଲି । ତାହାର ହାତରେ ଆପଣ ଦୟାକରି ମୋ ଜୋତା ମୋତେ ଦେବେ ।

ହାରମଜାଦା ବଜାର, କଟକ
ଆପଣଙ୍କର
ସ୍ୱଜନ ବନ୍ଧୁ, ଦ.ସ.

